# ଆଉ ବୁଝାଇଲେହିଁ ଇଚ୍ଛା ପୂରେ...



ଟଙ୍କା ଯଦି ଜମାଇ ହେବ ତ ଇଚ୍ଛା ପୂରଣ ହେବ ! ତୁମର କଣ ଦରକାର ? ସାଇକେଲ୍ ? କ୍ୟାମେରା ସେଟ୍ ? ନା ଗୋଟିଏ ନୂଆ କ୍ୟାମେରା ? ଯେ ଯାହା ହେଉନା କାହିଁକି ତାକୁ ତ ତୁମେ ନିଜ ଟଙ୍କାରେ କିଣି ପାରିବ । କାନାଡ଼ା ବ୍ୟାଙ୍କର **ବାଳକ୍ଷେମ ଡିପୋଜିଟ୍** ପ୍ରକଳ୍ପ ତ ତୁମମାନଙ୍କ ପାଇଁହିଁ ଉଦ୍ଦିଷ୍ଟ । ସୁନ୍ଦର ତଥା ମଜାଦାର ଏହି ବାଳକ୍ଷେମ ହୋମ୍ ସେଭିଂସ ବାକ୍ସରେ ମନ ଖୁସିରେ ଖୁଚୁରା ପଇସା ଜମାଇ ଯାଅ । ଭର୍ତ୍ତି ହୋଇଗଲେ କାନାଡ଼ା ବ୍ୟାଙ୍କର ଶାଖାରେ ଜମାଦେଇ ପୁଣି ନୂଆ କରି ଜମାଇବା ଆରମ୍ଭ କର । ଦେଖିବ, ତୁମର ଜମା ଟଙ୍କା କିପରି ବଢ଼ି ଯାଉଛି—କାରଣ ତା' ସହିତ ଆମେ ତ ସୁଧ ଦେଉ ଟଙ୍କା ତୁମକୁ ଦେବୁ, ସେଥିପାଇଁ । ଦେଖିବ ଶୀଘ୍ର ମନମୁତାବକ ଜିନିଷ କିଣିବାର ଟଙ୍କା ତୁମେ ପାଇ ଯାଉଛ ।

ଦେଖିଲ ତ—ଇଚ୍ଛା ପୂରଣର ଉପାୟ କେତେ ମଜାଦାର ! ତା' ଛଡ଼ା ରେଡିଓରେ ଟେଲିରେ କି ଟଙ୍କା ଉପରେ ଜମାଇବାକୁ ସ୍ୱପ୍ନ ଦେଖାଯାଏ ଶିଖିଗଲ, ବୁଝିଲ ତ ?

ଅଧିକ ଖବର ଜାଣିବା ପାଇଁ କାନାଡ଼ା ବ୍ୟାଙ୍କର ନିକଟବର୍ତ୍ତୀ ଯେକୌଣସି ଶାଖାକୁ ଯାଆନ୍ତୁ । ଆମର ଅନ୍ୟାନ୍ୟ ସଞ୍ଚୟ ପ୍ରକଳ୍ପ ମଧ୍ୟରେ ରହିଛି କାମଧେନୁ, ବିଦ୍ୟାନିଧି ଓ କଳ୍ପତରୁ ।

## ବାଳକ୍ଷେମ ଡିପୋଜିଟ୍




## କାନାଡ଼ା ବ୍ୟାଙ୍କ




(ଏକ ରାଷ୍ଟ୍ରାୟତ୍ତ ବ୍ୟାଙ୍କ)

ସାରା ଦେଶରେ ଏହି ବ୍ୟାଙ୍କର ୧୨୦୦ ରୁ ଅଧିକ ଶାଖା ରହିଛି

maa CB 40-80



# ଜହ୍ନମାମୁଁ

ଜୁନ୍ ୧୯୮୦



## ବିଷୟ-ସୂଚୀ








# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

"ଜହ୍ନମାମୁଁ" ତ୍ରୟୋଦଶ ବର୍ଷ ଉତ୍ତୀର୍ଣ୍ଣ ହୋଇ ଆଜି ଚତୁର୍ଦ୍ଦଶ ବର୍ଷରେ ଉପନୀତ ହେବା ଅବସରରେ ତା'ର ସମସ୍ତ ଶୁଭେଚ୍ଛୁକଙ୍କୁ ଅଭିବାଦନ ଜଣାଇବା ସଙ୍ଗେ ସଙ୍ଗେ ସେମାନଙ୍କ ଶୁଭେଚ୍ଛା କାମନା କରୁଛି ।

*

## ଅମରବାଣୀ

ହିରଣ୍ୟଧାନ୍ୟରତ୍ନାନି ଯାନାନି ବିବିଧାନି ଚ ।
ତଥାନ୍ୟଦପି ଯତ୍କିଞ୍ଚିତ୍ ପ୍ରଜାଭ୍ୟସାନ୍ନୃପତେଃ ॥

ରାଜା ଯେଉଁ ସୁନା, ଶସ୍ୟସମ୍ଭାର, ରତ୍ନ ଓ ନାନାବିଧ ଯାନ-ବାହାନକୁ ନେଇ ଏତେ ଆଡ଼ମ୍ବର କରନ୍ତି, ସେସବୁ ପ୍ରଜାଙ୍କଠାରୁହିଁ ସେ ପାଇଥାନ୍ତି ।

ବର୍ଷ : ୧୪ | ଜୁନ୍ ୧୯୮୦ | ଅଙ୍କ : ୧

ପ୍ରତିସଂଖ୍ୟା ଟ୧.୫୦ | ବାର୍ଷିକ ମୂଲ୍ୟ : ଟ୧୮.୦୦






ପ୍ରଶ୍ନ : ଅନେକ ସମୟରେ ପତ୍ରପତ୍ରିକାମାନଙ୍କରେ ଲୋଚ୍ ନେସ୍ ଦାନବ (Loch Ness Monster) ବୋଲି କୌଣସି ଜୀବର ଉଲ୍ଲେଖ ଦେଖାଯାଏ । ତାହା କ'ଣ ? ସେ ଦାନବ କ'ଣ ଏ ଯାଏ ବଞ୍ଚି ରହିଛି ?

ଉତ୍ତର : ସ୍କଟ୍‌ଲ୍ୟାଣ୍ଡରେ ହ୍ରଦକୁ ଲୋଚ୍ ବୋଲି କୁହାଯାଏ । ଗୋଟିଏ ନିର୍ଦ୍ଦିଷ୍ଟ ହ୍ରଦର ନାମ ହେଲା ଲୋଚ୍ । ବହୁ ପ୍ରାଚୀନ କାଳରୁ ସେଠାକାର ଲୋକଙ୍କର ଧାରଣା ଯେ ସେ ହ୍ରଦ ଗର୍ଭରେ କେତେକ ବହୁଦାକାୟ ପ୍ରାଣୀ ରହୁଛନ୍ତି । ୧୯୩୩ ମସିହାରେ ଜଣେ ଭଦ୍ରଲୋକ ସେ ହ୍ରଦକୂଳରେ ବୁଲୁଥିବା ବେଳେ ସେ ହ୍ରଦ ଭିତରେ ଗୋଟାଏ ଅତିକାୟ ପ୍ରାଣୀ ମୁଣ୍ଡ ଟେକିବାର ଦେଖିପକାଇଲେ । ଯୋଗକୁ ତାଙ୍କ ହାତରେ କ୍ୟାମେରା ଥିଲା । ସେ ଫୋଟୋ ଉଠାଇନେଲେ । ଅତି ଅଳ୍ପ ସମୟ ଭିତରେ ପ୍ରାଣୀଟି ପୁଣି ହ୍ରଦ ଭିତରେ ଲୁଚିଗଲା ।

ସେ ଛବିଟି ବହୁ ଜନପ୍ରିୟ । ଅନେକ ବହି ଓ ପତ୍ରପତ୍ରିକାରେ ତାହା ଦେଖିବାକୁ ମିଳେ । ସେ ପ୍ରାଣୀର ବେକ ଓ ମୁଣ୍ଡ ସହ ଜିରାଫର ସାଦୃଶ୍ୟ ରହିଛି । ଲୋଚ୍ ନେସ୍ ଦାନବ ନାମରେ ସେ ବିଖ୍ୟାତ ।

ପରେ ଅନ୍ୟମାନେ ମଧ୍ୟ ସେ ଜୀବ ମୁଣ୍ଡ ଟେକିବାର ଦେଖିଛନ୍ତି । ତେବେ ଆଉ କେହି ଫୋଟୋ ଉଠାଇପାରି ନାହାନ୍ତି । ଅନେକ ବୈଜ୍ଞାନିକ ସେଠାକୁ ଯାଇ ଅନୁସନ୍ଧାନ କରିଛନ୍ତି । ୧୯୬୧ ମସିହାରେ "ଲୋଚ୍ ନେସ୍ ବ୍ୟାପାରିସ୍ଥ ସନ୍ଧାନ ସମିତି" ନାମରେ ଗୋଟିଏ ଅନୁଷ୍ଠାନ ଗଠିତ ହେଲା । ୧୯୭୦ ମସିହା ମ
[illegible]
ହୋଇଛି, ସେଥିରୁ ଜଣାଯାଏ ଯେ ହ୍ରଦ ଭିତରେ ଦାନବୀୟ ପ୍ରାଣୀ ଥିବା କଥାକୁ ଉଡ଼ାଇଦେଇ ହେବ ନାହିଁ ।

ପାଞ୍ଚ ଛଅ ବର୍ଷ ତଳେ ଆମେରିକାର ସମ୍ବାଦପତ୍ର ସଂସ୍ଥା ଓ କେତେକ ବୈଜ୍ଞାନିକ ମିଶି ହ୍ରଦ ଭିତରକୁ କ୍ୟାମେରା ଓ ଶବ୍ଦଗ୍ରହଣକାରୀ ଯନ୍ତ୍ରମାନ ପଠାଇ ଦାନବର ସ୍ଥିତି ସମ୍ପର୍କରେ ବିବରଣୀ କରିବାକୁ ସଂଗ୍ରହ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ସଠିକ୍ କିଛି ଜଣାଗଲା ନାହିଁ । ଯିଏ ସେ ହ୍ରଦରେ ଦାନବୀୟ ପ୍ରାଣୀ ଅଛି ବୋଲି ପ୍ରମାଣ କରିଦେବ, ସେ ଦଶଲକ୍ଷ ପାଉଣ୍ଡ୍ ମୁଦ୍ରା ପୁରସ୍କାର ପାଇବ ବୋଲି ଜଣେ ସ୍କଟ୍‌ଲଣ୍ଡ୍‌ବାସୀ ଶିଳ୍ପପତି ଘୋଷଣା କରିଛନ୍ତି ।



# ପଞ୍ଚତନ୍ତ୍ର

ମଗଧ ଦେଶରେ ଥିଲା ଚମ୍ପକବତୀ ନାମକ ଅରଣ୍ୟ । ତହିଁ ମଧ୍ୟରେ ବସବାସ କରୁଥିଲେ କେତେ ପଶୁପକ୍ଷୀ । ଗୋଟିଏ କାଉ ଏବଂ ହରିଣଟିଏ ପରସ୍ପର ବନ୍ଧୁ ହୋଇଥିଲେ । ହରିଣଟି ଦେଖିବାକୁ ବେଶ୍ ଡଉଲଡାଉଲ୍ ହୋଇଥାଏ । ଗୋଟାଏ ଶୃଗାଳ ତାକୁ ଦେଖି ଭାବିଲା, "ଆହା, ଏହାର ମାଂସ କେତେ ମଧୁର ହୋଇଥିବ ! କିନ୍ତୁ ମୋ ପକ୍ଷରେ ଏହାକୁ ମାରିବା ସହଜ ନୁହେଁ । ଦେଖାଯାଉ, ପ୍ରଥମେ ଏହାର ବିଶ୍ୱାସ ଉତ୍ପାଦନ କରେ ।"

ହରିଣ ପାଖକୁ ଯାଇ ଶୃଗାଳ କହିଲା, "ନମସ୍ତେ । ସବୁ ଭଲ ତ ?"

ହରିଣ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତୁମେ କିଏ ?"

"ମୁଁ କ୍ଷୁଦ୍ରବୁଦ୍ଧି ନାମକ ଶୃଗାଳ । ଅବସ୍ଥାଚକ୍ରରେ ସବୁ ଆତ୍ମୀୟସ୍ୱଜନଙ୍କୁ ହରାଇ ଏକାକୀ ବଣରେ ଦିନ କାଟୁଛି । ତୁମକୁ ଦେଖିଲେ ମୋ ମନ ପୂରିଯାଏ । ତୁମେ ସିନା ଜାଣନା, ମୁଁ ତୁମକୁ ବନ୍ଧୁ ଭଳି ଦେଖୁଥାଏ ।"

ହରିଣ ଶୃଗାଳ ପ୍ରତି ବନ୍ଧୁବତ୍ ଆଚରଣ କଲା । ଦୁହେଁ ଏଣେତେଣେ ବୁଲିବୁଲି କଲେ । ସନ୍ଧ୍ୟା ବେଳକୁ ହରିଣ ନିଜ ବସାକୁ ଫେରିଲା । ଶୃଗାଳ ବି ସଙ୍ଗେସଙ୍ଗେ ଆସିଲା ।

ହରିଣର ବନ୍ଧୁ କାଉ ଗଛ ଡାଳରେ ଥାଇ ପଚାରିଲା, "ବନ୍ଧୁ ! ତୁମ ସାଥିରେ ଇଏ କିଏ ?"

"ଏ ଜଣେ ଶୃଗାଳ । ଆମ ସହ ବନ୍ଧୁତା ବାନ୍ଧିବା ଆଶାରେ ଆସିଛନ୍ତି ।" ହରିଣ କହିଲା ।

କାଉ କହିଲା, "ବନ୍ଧୁ ! କାହାର କୁଳ, ଗୋତ୍ର, ସ୍ୱଭାବ କିଛି ନ ଜାଣି ତାହା ସହ ବନ୍ଧୁତା କରିବା ବିପଜ୍ଜନକ । ବୃଦ୍ଧ ଜରଦ୍‌ଗବ



ଗୋଟିଏ ବିଲେଇକୁ ବିଶ୍ୱାସ କରି ନିଜର ସର୍ବନାଶ ଘଟାଇଥିଲଟି !"

ସେ ଘଟଣାଟି କ'ଣ ବୋଲି ହରିଣ ଆଗ୍ରହ ପ୍ରକାଶ କଲାରୁ କାଉ କହିଲା :

## ଜରଦ୍‌ଗବ ଓ ଦୀର୍ଘକର୍ଣ୍ଣ

ଗଙ୍ଗା ତୀରରେ ଅଛି ଗୃଧ୍ରକୂଟ ପର୍ବତ । ସେହି ପର୍ବତର ପାଦଦେଶରେ ଗୋଟିଏ ବରଗଛର ଖୋଲରେ ଜରଦ୍‌ଗବ ନାମକ ଗୃଧ୍ର ବାସ କରୁଥାଏ । ବହୁତ ବୁଢ଼ା ହୋଇଯାଇଥିବା ଯୋଗୁ ଭଲ ଭାବରେ ଦେଖିପାରୁ ନ ଥାଏ କି ଉଡ଼ାଉଡ଼ି କରି ପାରୁ ନ ଥାଏ । ସେ ଗଛରେ ଥିବା ପକ୍ଷୀମାନେ ତା' ପ୍ରତି ଦୟାପରବଶ ହୋଇ ନିଜ ନିଜ ଆହାରରୁ ତାକୁ କିଛି କିଛି ଦେଉଥା'ନ୍ତି । ପ୍ରତିଦାନରେ ଗୃଧ୍ର ସେମାନଙ୍କ ଶାବକମାନଙ୍କୁ ଜଗୁଥାଏ ।

ଦିନେ ପକ୍ଷୀମାନେ ଆହାର ଅନ୍ୱେଷଣରେ ଚାଲିଯାଇଥିବା ସମୟରେ ଦୀର୍ଘକର୍ଣ୍ଣ ନାମକ ବିଲେଇ ଆସି ଧୀରେ ଧୀରେ ଗଛ ଚଢ଼ିବାକୁ ଲାଗିଲା । ପକ୍ଷୀଶାବକମାନଙ୍କୁ ଖାଇବା ଥିଲା ତା'ର ଉଦ୍ଦେଶ୍ୟ । ତାକୁ ଦେଖି ଶାବକମାନେ କୋଳାହଳ କଲେ ।

ଢୁଳାଉଥିଲା ଗୃଧ୍ର । ଶାବକମାନଙ୍କ କୋଳାହଳ ଯୋଗୁ ସେ ନୟନ ବିସ୍ଫାରିତ କରି ଏଣେ ତେଣେ ଅନାଇ ବିଲେଇକୁ ଦେଖିପକାଇଲା ।

ବିଲେଇ ଦେଖିଲା ସେ ଧରାପଡ଼ିଗଲାଣି । ପଳାଇଯିବା ଅର୍ଥ ନିଜ ଉଦ୍ଦେଶ୍ୟ ଯେ ମନ୍ଦ ଥିଲା, ସେ କଥା ସ୍ପଷ୍ଟ କରିଦେବା । ତେଣୁ ସେ ଗଛଡାଳ ଆଡ଼କୁ ନ ଯାଇ ଗୃଧ୍ର ସାମନାରେ ଯାଇ ହାଜର ହେଲା ଓ କହିଲା, "ମହାଶୟ, ମୋ ପ୍ରଣାମ ଗ୍ରହଣ କରନ୍ତୁ ।"

"ତୁମ ପରିଚୟ ?" ଗୃଧ୍ର ଗମ୍ଭୀର କଣ୍ଠରେ ପ୍ରଶ୍ନ କଲା । "ମୁଁ ସାମାନ୍ୟ ମାର୍ଜାର ।" ଦୀର୍ଘକର୍ଣ୍ଣ ଉତ୍ତର ଦେଲା ।

"ମାର୍ଜାର ? ଆରେ, ତୁ ଏଆଡ଼େ କୁଆଡ଼େ ? ଆଉ ପାଦେ ଅଗ୍ରସର ହେଲେ ତୋ ପ୍ରାଣ ନେବି । ବିଳମ୍ବ ନ କରି ଏଇ ମୁହୂର୍ତ୍ତରେ ପଳାଇଯା ।" ଗୃଧ୍ର ଧମକ ଦେଇ କହିଲା ।

"ମହାଶୟ ! ଧୈର୍ଯ୍ୟ ଧରନ୍ତୁ ଏବଂ ମୋ କଥା ଶୁଣନ୍ତୁ । ତେଣିକି ଉଚିତ ମନେ କଲେ ମୋତେ ମାରିବେ । କାହାକୁ କ'ଣ ଖାଲି ତା' କୁଳ ବା ବଂଶ ଖରାପ ବୋଲି ଭର୍ତ୍ସନା କରିବା

ଠିକ୍ ? ପ୍ରତ୍ୟେକର ସ୍ୱଭାବ ଭିନ୍ନ ଅଲଗା । ଆଗେ ମୋ ଉଦ୍ଦେଶ୍ୟ ଜାଣି ତେଣିକି ସିନା ମୋ ପ୍ରତି ଆପଣଙ୍କ ମନୋଭାବ କ'ଣ ହେବ ତାହା ନିରୂପଣ କରିବେ !" ବିଲେଇ କହିଲା ।

"ତୁ କାହିଁକି ଏଠାକୁ ଆସିଛୁ ?" ଗୃଧ୍ର ପଚାରିଲା ।

"ମୁଁ ଏହି ଗଙ୍ଗାକୂଳରେ ରହୁଥାଏ । ବହୁତ ଦିନ ହେଲା ବ୍ରହ୍ମଚର୍ଯ୍ୟ ସାଙ୍ଗକୁ ଚାନ୍ଦ୍ରାୟଣ ବ୍ରତ ପାଳନ କରୁଛି । ଗଙ୍ଗାସ୍ନାନ କରି ପବିତ୍ର ଜୀବନ ଯାପନ କରୁଛି । ଆପଣ ଜଣେ ବୟୋବୃଦ୍ଧ ଜ୍ଞାନୀ ଗୃଧ୍ର ବୋଲି କେତେକ ପକ୍ଷୀ କହୁଥିବାର ଶୁଣି ଆପଣଙ୍କୁ ଭେଟିବାର ଅଭିଲାଷ ହେଲା । ସତ୍‌ସଙ୍ଗ ଦ୍ୱାରା ମୋ ସମସ୍ତ ଆତ୍ମର ସୁଖପ୍ରଦ ହେବ, ଏହି ଆଶାରେ ଆସିଥିଲି । କିନ୍ତୁ ଆପଣ ଦେଖିବା ମାନେ କାହିଁକି ଦୂର୍‌ଦୂର୍ କରୁଛନ୍ତି, ତାହାର ରହସ୍ୟ ବୁଝି ପାରୁନାହିଁ । ପୁଣ୍ୟାତ୍ମା ମାନେ ଜାଣନ୍ତି ଅତିଥି ଦେବତା ସମାନ । ଶତ୍ରୁ ମଧ୍ୟ ଅତିଥି ରୂପେ ଆସିଲେ ତାକୁ ସ୍ୱାଗତ କରିବା ଗୃହସ୍ୱାମୀର କର୍ତ୍ତବ୍ୟ । ଯଦି ଅତିଥି ବିତାଡ଼ିତ ହୁଏ, ତେବେ ସେ ଗୃହସ୍ୱାମୀର ପୁଣ୍ୟତକ ଧରି ଚାଲିଯାଏ । ସହନଶୀଳତା ମହତ୍ତ୍ୱର ଲକ୍ଷଣ । ଲୋକେ ବୃକ୍ଷର ଫଳ ଆଶାରେ ଢେଲା ଫୋପାଡ଼ନ୍ତି । ତଥାପି ବୃକ୍ଷ ସେମାନଙ୍କୁ ଛାୟାରୁ ବଞ୍ଚିତ କରେ ନାହିଁ । ଆପଣଙ୍କ ପାଖରୁ ମୁଁ ସେହି ଜାତୀୟ ମହତ୍ତ୍ୱ ଆଶା କରୁଥିଲି ।" ବିଲେଇ କ୍ଷୁବ୍ଧ କଣ୍ଠରେ କହିଲା ।

ଗୃଧ୍ର ଦବିଯାଇ କହିଲା, "ବିଲେଇମାନେ କୋମଳ ପକ୍ଷିଶାବକ ଭକ୍ଷଣ କରିବାକୁ ବହୁତ ଭଲ ପାଆନ୍ତି । ଏ ଗଛରେ କିଛି ପକ୍ଷି-



ଶାବକ ଅଛନ୍ତି । ସେଥିପାଇଁ ମୁଁ ତୁମକୁ ଦେଖି ଆଶଙ୍କା ଅନୁଭବ କରିଥିଲି ।”

ବିଲେଇ କାନରେ ହାତ ଦେଇ କହିଲା, “ରାମ, ରାମ ! ମୁଁ ଇଏ କି କଥା ଶୁଣିଲି ! ଲୋଭ, ହିଂସା, ଏସବୁ କାହିଁ କେତେକାଳ ହେଲା ମୋ ମନରୁ ଲିଭିଗଲାଣି । ମୁଁ ବହୁତ ଧର୍ମଶାସ୍ତ୍ର ପଢ଼ିଛି । ଶାସ୍ତ୍ରମାନେ ଥରେ ଥରେ ପରସ୍ପର ବିରୋଧୀ କଥା କୁହନ୍ତି । କିନ୍ତୁ ଅହିଂସା ଯେ ପରମ ଧର୍ମ, ଏଥିରେ ସମସ୍ତେ ଏକ ମତ । ଆଜ୍ଞା, ଏ ଦେହ ନଶ୍ୱର । ମୃତ୍ୟୁ ପରେ ସାଙ୍ଗରେ ଯିବ କ'ଣ ? ପୁଣ୍ୟ । ଶାବକମାନଙ୍କୁ ଖାଇ ମୋ ଜିହ୍ୱାର ତୃପ୍ତିବିଧାନ ସିନା କରିବି, କିନ୍ତୁ ପରଲୋକକୁ କ'ଣ ନେଇଯିବି ? ଆପଣଙ୍କ ମନକୁ ଯେ ମୋ ଯୋଗୁ ପାପ ଛୁଇଁଲା, ସେଥିରେ ମୁଁ ବହୁତ ଦୁଃଖିତ । ସାମାନ୍ୟ ତୃଣ ଖାଇ ଜୀବନ ଧାରଣ ସମ୍ଭବ । ସେ ସ୍ଥଳେ ନିରୀହ ପକ୍ଷିଶାବକମାନଙ୍କୁ ଖାଇବା ମୋର କ'ଣ ଦରକାର ? ସେ ପାପ କରିବି କାହିଁକି ?”

ଗୃଧ୍ର ବିଲେଇର କଥା ଶୁଣି ନିଜ ବ୍ୟବହାର ଯୋଗୁ ଅନୁତାପ କଲା । ପକ୍ଷୀମାନଙ୍କ ସହ ପରାମର୍ଶ ନ କରି ସେ ବିଲେଇକୁ ଗଛ ଖୋଲରେ ରହିବାକୁ ଦେଲା ।

ବିଲେଇ ଏଣେ ଗୃଧ୍ର ସହ ନାନା ଜ୍ଞାନ ଚର୍ଚ୍ଚା କରେ, ତେଣେ ଗୃଧ୍ରକୁ ନିଦ ଲାଗିଗଲେ ଚୁପ୍‌କିନା ଯାଇ ଗୋଟାଏ ନା ଗୋଟାଏ ପକ୍ଷିଶାବକକୁ ଧରିଆଣି ସେହି ଖୋଲ ଭିତରେ ବସି ଆହାର କରେ । ଦୃଷ୍ଟିଶକ୍ତି ହରାଇଥିବାରୁ ଜରଦ୍‌ଗବ ଦେଖିପାରେ ନାହିଁ ।

କେଇଦିନ ଭିତରେ ପକ୍ଷୀମାନେ କେହି ତାଙ୍କ ଶାବକମାନଙ୍କୁ ଚୋରି କରି ନେଇଯାଉଥିବାର ବୁଝିପାରି ଗୋଟିଏ ଆଲୋଚନାସଭା ଡାକିଲେ ଓ ଦୁଷ୍ଟକୁ ଯେମିତି ହେଲେ ଠାବ କରିବାକୁ ସ୍ଥିର କଲେ । ବିଲେଇ ଗଛ ଛାଡ଼ି ପଳାଇଗଲା ।

ପକ୍ଷୀମାନେ ଗୃଧ୍ରକୁ ଜେରା କରିବା ପାଇଁ ତା' ଖୋଲ ଭିତରେ ପଶି ଦେଖିଲେ ଶାବକମାନଙ୍କର ଅସ୍ଥି ଓ ଚଞ୍ଚୁମାନ ସେଇଠି ପଡ଼ିଛି । ଆଉ ସେମାନଙ୍କୁ ସମ୍ଭାଳେ କିଏ ! ସେମାନେ ଗୃଧ୍ରକୁ କାମୁଡ଼ି ଖୁମ୍ପି ମାରିପକାଇଲେ ।






ପ୍ରାଚୀନ କାଳର କଥା । ଗୋଟିଏ ଦ୍ୱୀପ ଥିଲା । ନାମ ତା'ର କୁଣ୍ଡଳମା । ରାଜୁତି କରୁଥିଲେ ରାଜା ଶଙ୍ଖସେନ ।

ଅନେକ କାଳ ଧରି ଶଙ୍ଖସେନଙ୍କ ପୂର୍ବ-ପୁରୁଷମାନେ ସୁରୁଖୁରୁରେ ଶାସନ କରୁଥିଲେ । କୁଣ୍ଡଳମା ରାଜ୍ୟ ଗୋଟିଏ ଦ୍ୱୀପ ହୋଇ ଥିବା ଯୋଗୁ ବାହାର ଦ୍ୱୀପ ସହିତ ତା'ର ବିଶେଷ କୌଣସି ସମ୍ପର୍କ ନ ଥିଲା । ବାହାରର କୌଣସି ରାଜ୍ୟ କୁଣ୍ଡଳମା ଆକ୍ରମଣ କରିବା ମଧ୍ୟ ସହଜ ନ ଥିଲା । ତେଣୁ ଲୋକମାନେ ପ୍ରାୟ ସୁଖଶାନ୍ତିରେ ଦିନ ବିତାଉଥିଲେ ।

ରାଜା ଶଙ୍ଖସେନ ସୁନାମ ଅର୍ଜନ କରିବା ସକାଶେ ଅତ୍ୟନ୍ତ ଆଗ୍ରହୀ ଥିଲେ । ସିଂହାସନ ଆରୋହଣ କରିବାର ଦଶବର୍ଷ ଭିତରେ ସେ ନାନାଦି କଲ୍ୟାଣକର କାର୍ଯ୍ୟ ସଙ୍ଗେ ସଙ୍ଗେ ବହୁତ ଦାନଧର୍ମ କଲେ । ସେତିକରେ ତାଙ୍କର ଶାନ୍ତି ହେଲା ନାହିଁ । ସେ ପ୍ରଜାମାନେ ଦେଉଥିବା କର ଅଧାକୁ ହ୍ରାସ କରିଦେଲେ ।

କହିବା ବାହୁଲ୍ୟ ପ୍ରଜାମାନେ ଏଥିରେ ବହୁତ ଖୁସୀ ହେଲେ । ରାଜ୍ୟସାରା ରାଜାଙ୍କ ଯଶଗାନ ହେବାକୁ ଲାଗିଲା । "ଏହାକୁ ସିନା କହନ୍ତି ରାମ-ରାଜ୍ୟ !" ଲୋକେ କୁହାକୁହି ହେଲେ । ଦରବାରର କବିମାନଙ୍କ କଥା କ'ଣ କହିବା, ଗାଁ ଗଣ୍ଡାର ଅଜଣା ଅଶୁଣା କବିମାନେ ବି ରାଜାଙ୍କ




ଗୁଣ ବର୍ଣ୍ଣନା କରି ଗୀତମାନ ଲେଖିପକାଇଲେ । ଗାୟକମାନେ ଯାତ୍ରା ଉତ୍ସବ ପର୍ବପର୍ବାଣୀରେ ସେସବୁ ଗୀତ ବୋଲିଲେ ।

ଅନେକ ଗ୍ରାମର ପୁରୁଣା ନାମ ବଦଳାଇ-ଦେଇ ଲୋକେ ରାଜା ଶିବସେନଙ୍କ ନାମରେ ସେସବୁକୁ ନାମିତ କଲେ । କେଉଁ ଗାଁର ନାମ ଶିବସେନପୁର ହେଲା ତ ଆଉ କେଉଁ ଗାଁର ନାମ ଶିବଗଡ଼ ବା ଶିବପୁରୀ । ସ୍ଥାନେ ସ୍ଥାନେ ଲୋକେ ରାଜାଙ୍କ ପ୍ରତିମା ମଧ୍ୟ ଗଢ଼ି ତାହା ଉପରେ ଦୈନିକ ମାଳା ଚଢ଼ାଇବାର ଦେଖାଗଲା ।

ରାଜା ସେସବୁ ଶୁଣି ପୁଲକିତ ହୋଇ ଆହୁରି ବେଶୀ ବେଶୀ ଖର୍ଚ୍ଚ କଲେ । ଏଣେ ରାଜକୋଷରୁ ଆମଦାନୀ କମିଗଲା, ଖର୍ଚ୍ଚ ବଢ଼ି ଚାଲିଲା । ଫଳରେ ସଙ୍କଟ ଘନେଇଆସିଲା । କିନ୍ତୁ ସେ ସଙ୍କଟ କଥା ବୁଝୁଥାନ୍ତି କେବଳ ମନ୍ତ୍ରୀ । ରାଜାଙ୍କୁ ସେ ବାରମ୍ବାର ସେ କଥା ଚେତାଇଦେବାକୁ ଚେଷ୍ଟା କରି ମଧ୍ୟ ବିଫଳ ହେଉଥାନ୍ତି । "ହଉ ଦେଖିବା" କହି ରାଜା ସେ କଥା ଭୁଲି-ଯାଉଥାନ୍ତି ।

ଦିନେ ମନ୍ତ୍ରୀ ରାଜାଙ୍କୁ ଯାଇ କହିଲେ, "ମହା-ରାଜ, ପ୍ରଜାଙ୍କ ମଙ୍ଗଳ କରିବା ଗୋଟିଏ କଥା, ସେମାନଙ୍କୁ ଖାଲି ଖୁସୀ କରିବା ଅନ୍ୟ କଥା । ଖୁସୀ କରିବା ଦ୍ୱାରା ପ୍ରଜାଙ୍କର ମଙ୍ଗଳ କରାଗଲା ବୋଲି କହିହେବ ନାହିଁ । ଆପଣ ମୋ କଥା ଶୁଣନ୍ତୁ । ଅନ୍ତତଃ ପ୍ରଜାମାନେ ଯେପରି ଅନ୍ୟ କୌଣସି ସୃଜନାତ୍ମକ କାମ କରିବେ, ସେ ବ୍ୟବସ୍ଥା କରନ୍ତୁ ।"

"ମନ୍ତ୍ରୀ, ଦର୍ଶନ ଶୁଣିବା ଭଳି ମୋର ବର୍ତ୍ତମାନ ସମୟ ନାହିଁ । ଲୋକେ ଖୁସୀରେ ରହିବାଠାରୁ ଆଉ ଭଲ କଥା କ'ଣ ? ମୁଁ ଏତିକି ବୁଝୁଛି । ତୁମେ ବହୁତ ପୁରୁଣାକାଳିଆ ମନୋଭାବ ପୋଷଣ କରୁଥିବା ବ୍ୟକ୍ତି ।" ରାଜା ଅସନ୍ତୁଷ୍ଟ ହୋଇ କହିଲେ । ମନ୍ତ୍ରୀ ଚୁପ୍ ହୋଇଗଲେ, କିନ୍ତୁ ଭିତରେ ତାଙ୍କୁ ନିଦ ହେଲା ନାହିଁ ।

ଅବଶେଷରେ ଦିନେ ମନ୍ତ୍ରୀ ରାଜାଙ୍କୁ କହିଲେ,



"ମହିମା ! ଆପଣଙ୍କୁ ପରାମର୍ଶ ଦେବା ମୋର କର୍ତ୍ତବ୍ୟ । କିନ୍ତୁ ଆପଣ ଯଦି ମୋ ପରାମର୍ଶ ମୋଟେ ଗ୍ରାହ୍ୟ କରିବେ ନାହିଁ, ତେବେ ମୋର ବା ମନ୍ତ୍ରୀପଦରେ ଥାଇ ଲାଭ କ'ଣ ? ଅନୁଗ୍ରହ କରି ମୋତେ ମୋ ପଦରୁ ଅବ୍ୟାହତି ଦିଅନ୍ତୁ ।"

"ଏଭଳି ସିଦ୍ଧାନ୍ତ ନେବାର କାରଣ ?" ରାଜା ପଚାରିଲେ ।

"ଆପଣଙ୍କୁ ବାରମ୍ବାର କହିଛି; ପୁଣି କହୁଛି । ଆଉ କେତେଦିନ ପରେ ରାଜକୋଷ ଶୂନ୍ୟ ହୋଇଯିବ । ସୈନ୍ୟସାମନ୍ତ, କର୍ମଚାରୀମାନଙ୍କ କଥା ଦୂରେ ଥାଉ, ବଗିଚାର ମାଳୀମାନଙ୍କୁ ଦରମା ଦେଲା ଭଳି ସମ୍ବଳ ମଧ୍ୟ ନ ଥିବ । ମୋ ମନ୍ତ୍ରୀତ୍ୱ କାଳ ଭିତରେ ସେଭଳି ଅବସ୍ଥା ହେଉ, ଏତିକ ମୁଁ ଚାହେଁନା ।" ମନ୍ତ୍ରୀ ସ୍ପଷ୍ଟ ଜଣାଇ-ଦେଲେ ।

ଏତେବେଳେ ଯାଇ ରାଜାଙ୍କ ଚେତା ହେଲା । ସେ ମନ୍ତ୍ରୀଙ୍କୁ ଧୈର୍ଯ୍ୟ ଧରିବାକୁ କହି ଦୁଇଦିନ ଭିତରେ ଦରବାରର ବିଶେଷ ଅଧିବେଶନ ଡକାଇବାକୁ କହିଲେ ।

ବିଶେଷ ଦରବାରକୁ ରାଜ୍ୟର ସମସ୍ତ ଉଚ୍ଚ-ପଦସ୍ଥ କର୍ମଚାରୀମାନଙ୍କ ସମେତ ସବୁ ଅମାତ୍ୟ ଓ ବିଶିଷ୍ଟ ଲୋକଙ୍କୁ ଡକା ହେଲା ।

"ରାଜା ଅଧା କର ଉଠାଇଦେଇଥିଲେ । ଏଥର ବୋଧହୁଏ ପୂରା କର ଉଠାଇଦେବେ ।" କେହି କେହି ଅମାତ୍ୟ ଦରବାର ପାଇଁ ଡାକରା ପାଇ କହିଲେ ।

ଦରବାରରେ ସମସ୍ତେ ଏକତ୍ର ହେବା ପରେ ମନ୍ତ୍ରୀ ରାଜାଙ୍କ ନିର୍ଦ୍ଦେଶରେ ଦରବାରର ଉଦ୍ଦେଶ୍ୟ ବ୍ୟକ୍ତ କଲେ ! "ଭଦ୍ରମଣ୍ଡଳି ! ଆପଣମାନେ ଜାଣନ୍ତି ରାଜା ଆମର ସମସ୍ତଙ୍କ କରଭାର ହ୍ରାସ କରି ଆମର କୃତଜ୍ଞତାଭାଜନ ହୋଇଛନ୍ତି । ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ସକାଶେ ବହୁ ହିତକର କାର୍ଯ୍ୟ କରିଛନ୍ତି । କିନ୍ତୁ ସେଥି ସକାଶେ ବର୍ତ୍ତମାନ ରାଜକୋଷ ଖାଲି । ଶାସନ ଚାଲିବ କିପରି ? ପୁଣି ଥରେ ପୂର୍ବ କର ଚାଲୁ ହେଲେ କିପରି ହେବ ?"




ଅମାତ୍ୟମାନେ ଏଭଳି ପ୍ରଶ୍ନ ଶୁଣିବା ପାଇଁ ପ୍ରସ୍ତୁତ ନ ଥିଲେ । ସେମାନେ ଭାବୁଥିଲେ ରାଜା ଆଜିର କୌଣସି ଚମକପ୍ରଦ କଥା କହି ସେମାନଙ୍କଠାରୁ ପ୍ରଶଂସା ଶୁଣିବା ସକାଶେ ସେମାନଙ୍କୁ ଡକାଇଛନ୍ତି । ଏପରିକି କିଭଳି ଭାଷାରେ ରାଜାଙ୍କୁ ପ୍ରଶଂସା କରାଯିବ, ସେସବୁ ମଧ୍ୟ ଅନେକେ ସ୍ଥିର କରି ଆସିଥିଲେ । ମନ୍ତ୍ରୀଙ୍କ ପ୍ରଶ୍ନ ସେମାନଙ୍କୁ ଘୋର ଅଡୁଆରେ ପକାଇଲା । ସେମାନେ ଚୁପ୍‌ଚାପ୍ ବସି ଏହା ମୁହଁ ତା' ମୁହଁକୁ ଅନାଇଲେ, "ହେଃ, ରାଜକୋଷ କ'ଣ କେବେ ଖାଲି ହୁଏ ?"

ଜଣେ ସଭାସଦ୍ ଉଠିପଡ଼ି କହିଲେ, "ଆଜ୍ଞା, କର ନ ବଢ଼ାଇଲେ କ'ଣ ଶାସନ ଚାଲିବ ନାହିଁ ?"

ମନ୍ତ୍ରୀ ସେ ସଭାସଦ୍ ପ୍ରତି ତୀକ୍ଷ୍ଣ ଦୃଷ୍ଟିପାତ କରି କହିଲେ, "ସେହି ପ୍ରଶ୍ନ ତ ମୁଁ ଉଠାଉଛି । ଆପଣ ମୋତେ ଓଲଟା ପ୍ରଶ୍ନ ନ କରି କୌଣସି ସମାଧାନ ଜଣା ଥିଲେ କୁହନ୍ତୁ । ସାମାନ୍ୟ କରରେ ନାମ ମାତ୍ର ଶାସନ ଚାଲିପାରେ । କିନ୍ତୁ ଆମର ଯେପରି ସ୍ୱାସ୍ଥ୍ୟ ବିଭାଗ, ଶିକ୍ଷାବିଭାଗ ଇତ୍ୟାଦି କାମ କରୁଛି, ବିନା ଅର୍ଥରେ ସେସବୁ ଚାଲିବ କିପରି ? ଦେଶରକ୍ଷା ସକାଶେ ରହିଛି ସୈନ୍ୟବାହିନୀ । ସେମାନଙ୍କୁ ପୋଷଣ କରି-ହେବ କିପରି ?"

ସଭାସ୍ଥିତ ଜଣେ ଅମାତ୍ୟଙ୍କ ପୂର୍ବପୁରୁଷ ରାଜପରିବାରର କୌଣସି ବିଶେଷ ଉପକାର କରିଥିବା ହେତୁ ସେ ବଂଶ ଉପରୁ ବିଲକୁଲ୍ କର ଛାଡ଼ ହୋଇଥିଲା । ସେ ଅମାତ୍ୟ କହିଲେ, "ଏ ସମସ୍ୟାର ସମାଧାନ ସହଜ । ପୁଣି ଥରେ ପୂର୍ବ ହାରରେ କର ଧାର୍ଯ୍ୟ କରାଯାଉ । ବରଂ ପୂର୍ବ ଅପେକ୍ଷା ବେଶୀ କର ନିର୍ଧାର୍ଯ୍ୟ କଲେ ବି ଅନ୍ୟାୟ ହେବ ନାହିଁ । କାରଣ ଲୋକେ ଅନେକ ବର୍ଷ ହେଲାଣି ଅଧା କର ଦେଉଛନ୍ତି ।"

ଆଉ ଜଣେ ସଭାସଦ୍ କହିଲେ, "ମନ୍ତ୍ରୀ ମହୋଦୟ, ଆପଣଙ୍କ ପ୍ରଶ୍ନ ଯଥାର୍ଥ । ମୋତେ କ୍ଷମା କରିବେ, ସମସ୍ୟାର ସମାଧାନ କ'ଣ

ହୋଇପାରେ ସେକଥା ମୋ ମୁଣ୍ଡକୁ ଆସୁନାହିଁ । କିନ୍ତୁ ଗୋଟାଏ କଥା କହିବି । ଯେଉଁ କର ଥରେ ହ୍ରାସ କରାଯାଇଛି, ତାକୁ ପୁଣି ଚାଲୁ କରିବା ଅର୍ଥ ରାଜାଙ୍କ ସୁନାମ ଧୂଳିରେ ମିଶାଇ-ଦେବା । ଲୋକେ ଯେତିକି ଉତ୍ସାହରେ ରାଜାଙ୍କ ଯଶଗାନ କରୁଛନ୍ତି, ସେତିକି ବିରକ୍ତିଭାବ ସହ ତାଙ୍କର ଦୁର୍ନାମ କରିବେ; ସମସ୍ତ ଶାସନ ବ୍ୟବସ୍ଥାକୁ ଥଟ୍ଟା କରିବେ । ତେଣୁ କର ବଢ଼ାଇବା ପୂର୍ବରୁ ଦଶଥର ଚିନ୍ତା କରିବା ଆବଶ୍ୟକ ।"



ଦରବାରର ସମସ୍ତେ ନୀରବ ରହିଲେ ରାଜା ବିଚଳିତ ଦେଖାଗଲେ । ଏତେ ଯତ୍ନ କରି ସେ ରାମରାଜ୍ୟର ରାଜା ବୋଲି ଯେଉଁ ଗୌରବ ଅର୍ଜନ କରିଛନ୍ତି, ତାହା କର୍ପୂର ଭଳି ଉଡ଼ିଯିବ, ଏ ସମ୍ଭାବନା ତାଙ୍କୁ ହତାଶ କରିଦେଉଥିଲା ।

"ନା, ନା, କର ବଢ଼ାଇବା ହୋଇପାରିବ ନାହିଁ । ଥରେ ମୁଁ ଯେଉଁ ବ୍ୟବସ୍ଥା ଚାଲୁ କରିଛି, ତାହା ବଦଳାଇ ପାରିବି ନାହିଁ । ଆପଣମାନେ ଅନ୍ୟ କୌଣସି ପ୍ରସ୍ତାବ ଦିଅନ୍ତୁ ।" ରାଜା କହି-ଦେଲେ ।

"ଚିନ୍ତା ନାହିଁ, ମହାରାଜ ! ସମସ୍ୟାର ସମାଧାନ କାଠିକର ନୁହେଁ । ତେବେ ସର୍ବ-ସମକ୍ଷରେ ମୁଁ ସେ ସମାଧାନ ବ୍ୟକ୍ତ କରିବାକୁ ପ୍ରସ୍ତୁତ ନୁହେଁ ।" କହିଲେ ସେନାପତି ।

"ସତେ ? ମୁଁ ଜାଣେ, ମୋ ସେନାପତି ଜଣେ ଦକ୍ଷ ବ୍ୟକ୍ତି ଯଦ୍ୟପି ଆମ ରାଜ୍ୟ ଦ୍ୱୀପ ହୋଇଥିବା ଯୋଗୁ ସେନାପତିଙ୍କୁ ଯୁଦ୍ଧ କରିବାକୁ ପଡ଼େ ନାହିଁ, କିନ୍ତୁ ଯୁଦ୍ଧ କଲେ ଯେ ସେ ମୋ ପାଇଁ ବିଶ୍ୱଜୟ କରିପାରନ୍ତେ, ଏଥିରେ ମୋର ସନ୍ଦେହ ନାହିଁ । ସାବାସ୍, ସେନାପତି ସାବାସ୍ ।" ରାଜା ଉଲ୍ଲସିତ ହୋଇ କହିଲେ ।

"ମହାରାଜ, ଗୋପନରେ ଆପଣଙ୍କୁ ମୁଁ ମୋ ପ୍ରସ୍ତାବ ଶୁଣାଇବି । ସେଥିପାଇଁ ମୋତେ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ଦିଅନ୍ତୁ ।" ସେନାପତି ରାଜାଙ୍କ ପ୍ରଶଂସା ଶୁଣି ପ୍ରୀତ ହୋଇ ନରମ କଣ୍ଠରେ କହିଲେ ।



ରାଜା ସେନାପତିଙ୍କୁ ରାତିରେ ଆସି ଏକାକୀ ଭେଟିବାକୁ ନିର୍ଦ୍ଦେଶ ଦେଲେ । ଆଉ କେହି କୌଣସି ପ୍ରସ୍ତାବ ଦେଇପାରିଲେ ନାହିଁ । ଦରବାର ସାଙ୍ଗ ହେଲା ।

ମନ୍ତ୍ରୀ ମୁଣ୍ଡ ପୋତି ଗମ୍ଭୀର ଭାବରେ ବାହାରିଗଲେ । ତାଙ୍କ ପ୍ରତି ରାଜା ଆଉ ଦୃଷ୍ଟି ଦେଲେ ନାହିଁ ।

ରାତିରେ ରାଜା ଉତ୍କଣ୍ଠା ସହକାରେ ଉଦ୍ୟାନ ଭିତରେ ସେନାପତିଙ୍କୁ ଅପେକ୍ଷା କରିଥାନ୍ତି । ସେନାପତି ଯଥା ସମୟରେ ତାଙ୍କୁ ସାକ୍ଷାତ୍ କଲେ ଓ ଅଭିବାଦନ କରି କହିଲେ "ମହାରାଜ, ପ୍ରଥମେ ମୋର ପ୍ରଶ୍ନ ହେଲା, ଆପଣ କାହିଁକି ମୋର ଓ ସୈନ୍ୟବାହିନୀର ଭରଣପୋଷଣ କରୁଛନ୍ତି ?"

ରାଜା କୌଣସି ଉତ୍ତର ଦେବା ପୂର୍ବରୁ ସେନାପତି ପୁଣି କହିଲେ, "ସୈନ୍ୟବାହିନୀର କାମ ଦେଶ ଭିତରେ ଶାନ୍ତି ରକ୍ଷା, ଶତ୍ରୁର ଆକ୍ରମଣରୁ ଦେଶକୁ ରକ୍ଷା କରିବା, ତଥା ଅନ୍ୟ ଦେଶ ଆକ୍ରମଣ କରିବା । ବର୍ତ୍ତମାନ ତୃତୀୟ କାମଟି କରାଯାଉ । ଆମେ ଅନ୍ୟ ଦେଶ ଆକ୍ରମଣ କରି ସେମାନଙ୍କ ଧନଦୌଲତ ନେଇ-ଆସିବା; ଆମ ଅଭାବ ଦୂର ହେବ !"

ରାଜାଙ୍କ ମୁହଁ ଉଜଳି ଉଠିଲା । କିନ୍ତୁ ସେ କହିଲେ, "ସେନାପତି ! ତୁମ ପ୍ରସ୍ତାବଟି ଖୁବ୍ ମୂଲ୍ୟବାନ । କିନ୍ତୁ ଆମ ରାଜ୍ୟ ଗୋଟିଏ ଦ୍ୱୀପ । ସ୍ଥଳଭାଗରେ ଆମର ପଡ଼ୋଶୀରାଜ୍ୟ ବୋଲି କିଛି ନାହିଁ । ଆମ ପକ୍ଷରେ ଅନ୍ୟ ରାଜ୍ୟ ଆକ୍ରମଣ କରିବାକୁ ଯିବା ଅର୍ଥ ନୌବାହିନୀ ସଂଗଠିତ କରିବା ! ଆମ ସୈନ୍ୟମାନେ ନୌ ଅଭିଯାନରେ ପାରଙ୍ଗମ କି ? ପୁଣି ଆମର ଏତେ ନାବ କାହିଁ ?"

"ମହାରାଜ ! ଅଭିଯାନ ସଙ୍ଗଠନ କଥା ଆପଣ ମୋ ଉପରେ ଛାଡ଼ିଦିଅନ୍ତୁ । ଯାହା କରିବାର ମୁଁ କରିବି । ଚିନ୍ତା କରନ୍ତୁ ନାହିଁ । ରାଜକୋଷ ଭରାଇଦେବି ।" ସେନାପତି ସଦମ୍ଭେ ଉତ୍ତର ଦେଲେ ।




"ଭଲ କଥା । ତେବେ ତୁମେ ଯେପରି ବ୍ୟବସ୍ଥା କରିବା ଉଚିତ ତାହା କର । ତୁମର କାର୍ଯ୍ୟକଳାପରେ ମୋର ସମର୍ଥନ ଅଛି ବୋଲି ଜଣାଇବା ସକାଶେ ମୋର ସନ୍ତକ-ମୁଦ୍ରିକା ନିଅ । ସଙ୍ଗଠନ ସକାଶେ ଯେଉଁ ଘୋଷଣାପତ୍ର ବାହାର କରିବ, ସେଥିରେ ଏହା ବ୍ୟବହାର କରିପାର ।" ରାଜା ମୁଦ୍ରିକା ଦେଉ ଦେଉ କହିଲେ ।

ସେନାପତି ବିଦାୟ ନେଇ ସେହି ରାତିରେ ଯାଇ ନିଜ ଅଧୀନସ୍ଥ ଦଳପତିମାନଙ୍କୁ ଡକାଇ ନିଜ ଯୋଜନା ଜଣାଇଲେ ।

"ଆମେ ଜଳଯାତ୍ରା କରି ଧନ-ସମ୍ପଦ ଧରି ଫେରିଆସିବୁ ନା ସେସବୁ ରାଜ୍ୟ ଦଖଲ କରି ରହିବୁ ?" ଜଣେ ପ୍ରଶ୍ନ କଲେ ।

"ଫେରିଆସିବୁ ।" ସେନାପତି କହିଲେ ।

"ଭଲ କଥା । କିନ୍ତୁ ଆମେ ରାଜ୍ୟରେ ନ ଥିବା ବେଳେ ଯଦି ଏ ରାଜ୍ୟରେ ବିଦ୍ରୋହ ହୁଏ; ତେବେ ରାଜା କରିବେ କ'ଣ ? କିମ୍ବା ଯଦି ଆଉ କେହି ରାଜ୍ୟ ସେତେବେଳେ ଆମ ରାଜ୍ୟ ଆକ୍ରମଣ କରେ ?" ଦଳପତିଜଣକ ପଚାରିଲେ ।

ଏ ପ୍ରଶ୍ନରେ ସମସ୍ତେ ଚିନ୍ତିତ ଦେଖାଗଲେ । ତେବେ ଜଣେ ବୟସ୍କ ଦଳପତି କହିଲେ, "ଶୁଣ, ବିଦ୍ରୋହ କରିବ କିଏ ? ବୁଢ଼ାମାନେ ବା ଶିଶୁମାନେ ବିଦ୍ରୋହ କରିବେ ନାହିଁ । କଲେ ଥୋକେ ଯୁବକ କରିବେ । ସବୁ ଯୁବକଙ୍କୁ ସୈନ୍ୟ ଦଳରେ ଭର୍ତ୍ତି କରିଦେଲେ ତ କଥା ତୁଟିଯିବ ! ତେଣିକି ଆମ ସୈନ୍ୟ ସଂଖ୍ୟା ମଧ୍ୟ ବଢ଼ିଯିବା ଫଳରେ ଥୋକେ ସୈନ୍ୟ ରାଜ୍ୟରେ ରହିପାରିବେ !"

ଏହା ସମସ୍ତଙ୍କ ମନକୁ ପାଇଲା ।

ପରଦିନ ରାଜା ଚନ୍ଦ୍ରସେନଙ୍କ ସନ୍ତକଚିହ୍ନ ଥିବା ଘୋଷଣାପତ୍ରମାନ ଧରି ସୈନ୍ୟମାନେ ରାଜ୍ୟ ତମାମ ବୁଲି ପନ୍ଦର ବର୍ଷରୁ ଚାଳିଶବର୍ଷ ବୟସ ପର୍ଯ୍ୟନ୍ତ ସବୁ ଯୁବକଙ୍କୁ ସୈନ୍ୟଦଳରେ ଭର୍ତ୍ତି ହେବାକୁ ବାଧ୍ୟ କଲେ । କେହି କେହି

କହିଲେ, "ବାବୁ, ବରଂ ରାଜାଙ୍କୁ କୁହ, ସେ କର ବଢ଼ାଇଦେବେ । କିନ୍ତୁ ଆମେ ଘରଦ୍ୱାର ପିଲାପିଲି ଛାଡ଼ି ଅନ୍ୟ ରାଜ୍ୟ ଆକ୍ରମଣ କରିବାକୁ ଯିବୁ ନାହିଁ ।"

କିନ୍ତୁ ସୈନ୍ୟମାନେ କିଛି ଶୁଣିଲେ ନାହିଁ । ଯିଏ ପ୍ରତିବାଦ କଲା, ତାକୁ ସେମାନେ ଗିରଫ କରି ରାଜଧାନୀକୁ ପଠାଇଦେଲେ । ଦଳେ ଯୁବକ ଆସି ରାଜାଙ୍କୁ ଭେଟି ଯୁଦ୍ଧ ପରିବର୍ତ୍ତେ କରବୃଦ୍ଧିର ପ୍ରସ୍ତାବ ଦେବାରୁ ରାଜା କହିଲେ, "ତୁମ୍ଭେମାନେ ଏ ପର୍ଯ୍ୟନ୍ତ ମୋର କେତେ ପ୍ରଶଂସାଗାନ ଶୁଣି-ଆସିଛ । ପୁଣି ନିନ୍ଦାଗାନ ଶୁଣିବ, ଏହା ମୁଁ ସହିବ କିପରି ? ଦ୍ୱିଗ୍ୱିଜୟରେ ଆମ ରାଜବଂଶର ପରମ୍ପରା ହେଲା, ରାଜା ଥରେ ଯେଉଁ ସିଦ୍ଧାନ୍ତ ନିଅନ୍ତି, ସେଥିରୁ ସେ ଟଳନ୍ତି ନାହିଁ । ଯାଅ, ସୁନାପିଲା ଭଳି ସୈନ୍ୟଦଳରେ ଭର୍ତ୍ତି ହୋଇ-ଯାଅ ।"

ଅଭିଯାନ ପାଇଁ ପ୍ରସ୍ତୁତି ସରିଲା । ପବନ ଅନୁକୂଳ ଥିବା ବେଳେ ନୌକାରେ ସୈନ୍ୟ-ମାନେ ବସିଲେ । ରାଜା ସେମାନଙ୍କୁ ଯାତ୍ରାରମ୍ଭ ସକାଶେ ଆଦେଶ ଦେଲେ ।

ସେତିକିବେଳେ ହଠାତ୍ ଦକ୍ଷିଣ ଆକାଶରେ ଦେଖା ଦେଲା ଗୋଟିଏ ଉଜ୍ଜ୍ୱଳ ଓ ଭୟଙ୍କର ଧୂମକେତୁ । ସମସ୍ତେ ସ୍ତବ୍ଧ ହୋଇ ସେଆଡ଼େ ଅନାଇ ରହିଲେ ।

ରାଜ-ଜ୍ୟୋତିଷ କହିଲେ, "ମହାରାଜ ! ଏହା ଅଶୁଭ ଲକ୍ଷଣ । ଅଭିଯାନ ବନ୍ଦ ରହୁ । ପରେ ଶୁଭ ମୁହୂର୍ତ୍ତ ସ୍ଥିର କରି ଯାତ୍ରାରମ୍ଭ ହେବ ।"

"ଅସମ୍ଭବ । ଏଭଳି ଅନ୍ଧବିଶ୍ୱାସର କୌଣସି ମୂଲ୍ୟ ନାହିଁ ।" ସେନାପତି କହିଲେ

ରାଜା ସେନାପତିଙ୍କ ଉପରେ ନିର୍ଭର କରୁ-ଥିଲେ । ତେଣୁ ସେ ସେନାପତିଙ୍କ ପକ୍ଷ ସମର୍ଥନ କଲେ ।

ନୌକାମାନେ ପାଲ ଟାଣି ଦକ୍ଷିଣ ଦିଗକୁହିଁ ଯାତ୍ରା କଲେ । (କ୍ରମଶଃ)



# ନିର୍ବାସନ

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷ ପାଖକୁ ଲେଉଟି ଆସିଲେ । ମୃଦୁ ମୃଦୁ ବାରିପାତ ସାଙ୍ଗକୁ ଘନ ଘନ ବିଜୁଳି ଝଟକୁଥାଏ । ବଜ୍ରର ନିର୍ଘୋଷ ସହିତ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ।

କିନ୍ତୁ ସେସବୁ ପ୍ରତି ଭ୍ରୂକ୍ଷେପ ନ କରି ରାଜା ବୃକ୍ଷାରୋହଣ କରି ଶବଟିକୁ ଓହ୍ଲାଇ ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା : "ସାଧାରଣତଃ ଲୋକେ ଏହି ଅଭିଯୋଗ କରିଥାନ୍ତି ଯେ ସେମାନଙ୍କ ପ୍ରତିଭା ଯଥାଯୋଗ୍ୟ ସ୍ୱୀକୃତି ପାଉନାହିଁ । କିନ୍ତୁ ଏପରି ଦୃଷ୍ଟାନ୍ତ ମଧ୍ୟ ରହିଛି, ସେତେବେଳେ ପ୍ରତିଭାର ସ୍ୱୀକାର କରିବାକୁ ଯାଇ ଲୋକେ ଅପଦସ୍ଥ ହୋଇଛନ୍ତି । କହୁଛି ସେଭଳି ଏକ କାହାଣୀ । ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"







ବେତାଳ ଗପିଲା : ସୋମଗଡ଼ ରାଜ୍ୟରେ ରାଜୁତି କରୁଥାନ୍ତି ମାର୍ତ୍ତଣ୍ଡ ନାମକ ରାଜା । ତାଙ୍କର ଜଣେ ଅମାତ୍ୟ ନାମ ଶୁଭେନ୍ଦ୍ର ।

ଶୁଭେନ୍ଦ୍ର ନିଜେ କେତେ ବଡ଼ ଯୋଦ୍ଧା ସେ କଥା କହିବା ସହଜ ନୁହେଁ । କିନ୍ତୁ ସେ ଯୁଦ୍ଧବିଦ୍ୟାର ତତ୍ତ୍ୱମାନ ଉତ୍ତମ ରୂପେ ଜାଣିଥିଲେ । ସେ ଯେଉଁ କୌଶଳ ବତାଇ-ଦେଉଥିଲେ, ତାହା ଅନୁକରଣ କରି ସେନା-ପତିମାନେ ସର୍ବଦା ସଫଳ ହେଉଥିଲେ ।

ଥରେ ମାର୍ତ୍ତଣ୍ଡ ରାଜ୍ୟର ସୀମାରେ ଅବସ୍ଥିତ ଗୋଟିଏ ବଣକୁ ଶିକାର ପାଇଁ ଯାଇଥାନ୍ତି । ସାଥିରେ ଯାଇଥାନ୍ତି ଅଧିକାଂଶ ଦଳପତି ଓ ସେନାପତି । ନଅର ରକ୍ଷାର ଦାୟିତ୍ୱ କେବଳ ଶୁଭେନ୍ଦ୍ରଙ୍କ ଉପରେ ନ୍ୟସ୍ତ ହୋଇଥାଏ । ଓର ଉଣ୍ଡି ସେତିକିବେଳେ ପଡ଼ୋଶୀ ରାଜ୍ୟର ରାଜା ଖାରବର୍ମା ସୋମଗଡ଼ ଦୁର୍ଗ ଆକ୍ରମଣ କଲେ । ଶୁଭେନ୍ଦ୍ର ପ୍ରମାଦ ଗଣିଲେ । କାରଣ ଅସଲ ଯୋଦ୍ଧାମାନଙ୍କୁ ରାଜା ନିଜ ସାଥିରେ ନେଇ-ଯାଇଥାନ୍ତି । ଯାହାହେଉ, ଶୁଭେନ୍ଦ୍ର ନିଜର ମୁଷ୍ଟିମେୟ ସୈନ୍ୟଙ୍କୁ ଦୁର୍ଗ ପ୍ରାଚୀର ଉପରକୁ ଉଠାଇ ଦୁର୍ଗ ଘେରିଥିବା ଶତ୍ରୁପକ୍ଷ ଉପରକୁ ପ୍ରବଳ ପଥରମାଡ଼ ଏବଂ ଅଗ୍ନିଶର ବର୍ଷଣ ଆରମ୍ଭ କଲେ । ସେ ଏହି ଦୁର୍ଗରକ୍ଷା ବ୍ୟବସ୍ଥା ଏଭଳି ଦକ୍ଷ ଭାବରେ କଲେ ଯେ ଶତ୍ରୁପକ୍ଷ ପରାଜିତ ହୋଇ ପଳାଇଗଲେ ।

ଶତ୍ରୁପକ୍ଷର ମୃତ ସୈନ୍ୟମାନଙ୍କୁ ଶୁଭେନ୍ଦ୍ର ଯଥାବିଧି କବର କଲେ ଏବଂ ଆହତମାନଙ୍କୁ ଭିତରକୁ ଆଣି ସେମାନଙ୍କ ଶୁଶ୍ରୂଷା କଲେ ।

ତେଣେ ଗୁପ୍ତଚର ନିକଟରୁ ଖବର ଆକ୍ରମଣ ସମ୍ବାଦ ପାଇ ରାଜା ଶିକାର ଛାଡ଼ି ଦୌଡ଼-ଆସିଲେ । ଶୁଭେନ୍ଦ୍ରଙ୍କ କୃତିତ୍ୱ ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହେଲେ । କିନ୍ତୁ ଶତ୍ରୁପକ୍ଷର ଆହତ ସୈନ୍ୟମାନଙ୍କ ଶୁଶ୍ରୂଷା ବ୍ୟବସ୍ଥାକୁ ସେ ସମର୍ଥନ କଲେ ନାହିଁ । ବନ୍ଦୀମାନଙ୍କୁ ସେ ଅବିଳମ୍ବେ ପ୍ରାଣଦଣ୍ଡ ଦେଲେ ।

ମାର୍ତ୍ତଣ୍ଡଙ୍କ କ୍ରୋଧ ସେତିକରେ ପ୍ରଶମିତ ହେଲା ନାହିଁ । ସେ ନିଜର ସବୁ ସୈନିକଙ୍କୁ ଏକାଠି କରି ଖାରବର୍ମାଙ୍କ ରାଜ୍ୟ ଆକ୍ରମଣ କଲେ । କିନ୍ତୁ ଖାରବର୍ମା ସେଭଳି ହେବ ବୋଲି ଆଶଙ୍କା କରି ବହୁ ପୂର୍ବରୁ ସତର୍କ ରହିଥିଲେ । ସେ ଆଉ କେତେଜଣ ରାଜାଙ୍କ ସହାୟତାରେ ପ୍ରବଳ

ଯୁଦ୍ଧ କରି ମାର୍ତ୍ତଣ୍ଡଙ୍କ ବାହିନୀକୁ ପରାଜିତ କରିବା ସଙ୍ଗେ ସଙ୍ଗେ ମାର୍ତ୍ତଣ୍ଡଙ୍କୁ ବନ୍ଦୀ କଲେ । ଶୁଭେନ୍ଦ୍ର କୌଶଳକ୍ରମେ ଖସିଯାଇ ଜଣେ ସାଧାରଣ ନାଗରିକ ରୂପେ ବସବାସ କଲେ ।

ବୀରବର୍ମାଙ୍କ ସୈନ୍ୟମାନେ ସୋମଗଡ଼ ରାଜ୍ୟ ବ୍ୟାପି ଲୁଠତରାଜ ଚଳାଇଲେ ଓ ଜନସାଧାରଣଙ୍କୁ ନାନା ନିର୍ଯାତନା ଦେଲେ । ସୋମଗଡ଼ ସେମାନଙ୍କ ଉପନିବେଶ ହୋଇ ରହିଲା ।

ଶୁଭେନ୍ଦ୍ର ସେ ପରିସ୍ଥିତି ସହିପାରିଲେ ନାହିଁ । ଧୀରେ ଧୀରେ ଗୋପନରେ କେତେକ ସାହସୀ ଯୁବକଙ୍କୁ ଏକତ୍ର କରି ଗୋଟିଏ ଦୁର୍ଦ୍ଧର୍ଷ ସେନାବାହିନୀ ଗଠନ କଲେ । ଦିନେ ରାତିରେ ହଠାତ୍ ସେମାନେ କାରାଗାର ଉପରେ ଚଢ଼ାଉ କରି ରାଜା ମାର୍ତ୍ତଣ୍ଡଙ୍କୁ ମୁକ୍ତ କରିଦେଲେ ଓ ବୀରବର୍ମାଙ୍କୁ ଓ ତାଙ୍କ କର୍ମଚାରୀମାନଙ୍କୁ ବନ୍ଦୀ କଲେ ।

ସେ ସମ୍ବାଦ ପ୍ରଚାରିତ ହୋଇଯିବା ମାତ୍ରେ ସୋମଗଡ଼ର ଜନସାଧାରଣ ପ୍ରବଳ ଉତ୍ସାହରେ ଯେଉଁଠି ବୀରବର୍ମାଙ୍କ ସୈନିକ ବା ପ୍ରତିନିଧି ଥିଲେ ସେମାନଙ୍କୁ ଆକ୍ରମଣ କରି ଭଗାଇଦେଲେ ।

ମାର୍ତ୍ତଣ୍ଡ ସିଂହାସନ ଫେରିପାଇବା ମାତ୍ରେ କାଳବିଳମ୍ବ ନ କରି ବୀରବର୍ମାଙ୍କ ସମେତ ତାଙ୍କର ସବୁ ମୁଖ୍ୟ କର୍ମଚାରୀଙ୍କ ମୁଣ୍ଡକାଟ କଲେ । ସଙ୍ଗେ ସଙ୍ଗେ ଦରବାରରେ ଘୋଷଣା କରିଦେଲେ ଯେ ତରୁଣିକ ଶୁଭେନ୍ଦ୍ର ହେବେ ପ୍ରଧାନ ସେନାପତି ।

କିନ୍ତୁ ସେହିଦିନ ରାତିରେ ଶୁଭେନ୍ଦ୍ର ରାଜାଙ୍କୁ ଦେଖା କରି କହିଲେ, "ମହାରାଜ ! କ୍ଷମା



କରନ୍ତୁ । ମୁଁ ସେନାପତି ପଦର ଯୋଗ୍ୟ ନୁହେଁ କି ସେଥିପାଇଁ ମୋର ଆଗ୍ରହ ନାହିଁ ।"

ରାଜା କ୍ଷୁବ୍ଧ କଣ୍ଠରେ ପଚାରିଲେ, "ଏ ସିଦ୍ଧାନ୍ତ କ'ଣ ପକ୍କା ?"

"ହଁ, ଏଥିରେ ମୁଁ ଅଟଳ ।" ଦୃଢ଼ କଣ୍ଠରେ ଶୁଭେନ୍ଦ୍ର ଉତ୍ତର ଦେଲେ ।

ରାଜା ତୀବ୍ର ଦୃଷ୍ଟିରେ ତାଙ୍କୁ ଅନାଇ କହିଲେ, "ବେଶ୍ । ତେବେ ପ୍ରଭାତ ହେବା ପୂର୍ବରୁ ତୁମେ ଏ ରାଜ୍ୟ ତ୍ୟାଗ କରି ଚାଲିଯାଅ । ନ ହେଲେ ତୁମର ବିପଦ ହୋଇପାରେ ।"

"ମହାରାଜ, ଏ ଆଜ୍ଞା ମୁଁ ପାଳନ କରିବି ।" ଏହା କହି ଶୁଭେନ୍ଦ୍ର ରାଜ୍ୟ ଛାଡ଼ି ଚାଲିଗଲେ ।

ବେତାଳ ଟିକିଏ ଚୁପ୍ ରହି ତା'ପରେ କହିଲା, "ରାଜା ! ଶୁଭେନ୍ଦ୍ର କାହିଁକି ଉପଯୁକ୍ତ

ପଦ ଗ୍ରହଣ କରିବାକୁ କୁଣ୍ଠିତ ହେଲେ ? ସେ ଯେ ଅଯୋଗ୍ୟ, ତାହା ନୁହେଁ । ତେବେ ତାଙ୍କ କଥା ଯାହା ହେଉ, ରାଜା କିପରି ଏଭଳି ଆଚରଣ କଲେ ? ଶୁଭେନ୍ଦ୍ରଙ୍କ ପ୍ରତି ସେ କୃତଜ୍ଞ ରହିବା କଥା । ସେ ସ୍ଥଳେ ଶୁଭେନ୍ଦ୍ର ସେନାପତି ପଦ ପ୍ରତ୍ୟାଖ୍ୟାନ କଲେ ବି ରାଜା ତାଙ୍କୁ ଭିନ୍ନ ପ୍ରକାରେ ସମ୍ମାନ ଦେଇପାରି-ଥାନ୍ତେ । ତାହା ନ କରି ରାଜ୍ୟରୁ ବାହାର କରିଦେଲେ କିପରି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମାତ୍ର ଦ୍ୱିଧା ନ କରି ରାଜା ବିକ୍ରମ ଉତ୍ତର ଦେଲେ : "ଶୁଭେନ୍ଦ୍ର ସେନାପତି ପଦ ପ୍ରତ୍ୟାଖ୍ୟାନ କରିବାର ହେତୁ, ସେ ଜଣେ ସ୍ୱାଧୀନଚେତା ବ୍ୟକ୍ତି । ସେ ରାଜାଙ୍କୁ ପରାମର୍ଶ ଦେଉଥିଲେ । କିନ୍ତୁ ସେନାପତି ହେଲେ ତାଙ୍କ ଆଦେଶ ମୁହଁ ବୁଜି ମାନିବାକୁ ହୁଅନ୍ତା । ଶୁଭେନ୍ଦ୍ରଙ୍କ ସ୍ୱଭାବ ସହ ତାହା ଯାଆନ୍ତା ନାହିଁ ।

ଶୁଭେନ୍ଦ୍ର ଥିଲେ ମାନବତାବାଦୀ । ଏହାର ପ୍ରମାଣ ପ୍ରଥମ ଥର ଯୁଦ୍ଧରେ ଆହତ ସୈନିକ-ମାନଙ୍କୁ ସେ ଶୁଶ୍ରୂଷା କରିବାର ବ୍ୟବସ୍ଥା କରିଥିଲେ । ରାଜା ଭାବିଥିଲେ ଶୁଭେନ୍ଦ୍ର ରାଜ-ଭକ୍ତ । ରାଜା ଯାହା କହିବେ, ଶୁଭେନ୍ଦ୍ର ତାହା କରିବେ । କିନ୍ତୁ ହଠାତ୍ ରାଜା ବୁଝିପାରିଲେ ଯେ ଶୁଭେନ୍ଦ୍ର ରାଜଭକ୍ତ ନୁହନ୍ତି, ଦେଶଭକ୍ତ । ବୀରବର୍ମା ସୋମଗଡ଼ ପ୍ରଜାଙ୍କ ଉପରେ ଅତ୍ୟାଚାର ନ କରି ସୁଶାସନ କରିଥିଲେ ହୁଏ ତ ସେ ଚୁପ୍‌ଚାପ୍ ରହିଥାନ୍ତେ । ରାଜା ମାର୍ତ୍ତଣ୍ଡ ଦେଖିଲେ, ଏପରି ଲୋକଙ୍କୁ ବିନା ଦାୟିତ୍ୱରେ ଦେଶରେ ରହିବାକୁ ଦେବା ନିରାପଦ ନୁହେଁ । ସେନାପତି ପଦ ଗ୍ରହଣ କରିଥିଲେ ଶୁଭେନ୍ଦ୍ର ରାଜାଙ୍କ ଭୃତ୍ୟ ହୋଇ ରହିଥାନ୍ତେ । କିନ୍ତୁ ତା' ନ ହେଲେ ଆଜି ଯେଉଁ ରାଜାଙ୍କ ପାଇଁ ସେ ଲଢ଼ିଛନ୍ତି, ଦେଶର ହିତ ଦୃଷ୍ଟିରୁ ସେ ସେହି ରାଜାଙ୍କ ବିରୁଦ୍ଧରେ ଯିବାକୁ ମଧ୍ୟ ପଶ୍ଚାତ୍‌ପଦ ହେବେ ନାହିଁ । ତେଣୁ ଶୁଭେନ୍ଦ୍ରଙ୍କୁ ନିର୍ବାସିତ କଲେ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲିପଡ଼ିଲା । (କଳ୍ପିତ)





# ଚରମ ନିଶ୍ଚୟ

"ଝିଅ ବାହାଘରର ବିଷୟରେ ସବୁ କଥା ଶେଷ କରି ଆସିଛ ତ ?" ପାର୍ବତୀ ତା' ସ୍ୱାମୀ ରାଜେଶଙ୍କୁ ପଚାରିଲା ।

ରାଜେଶ କହିଲା, "ହଁ ବରପକ୍ଷ ଆମ ଝିଅ ରାଗିଣୀକୁ ଦେଖି ପସନ୍ଦ କରିଛନ୍ତି ଯେ ତେବେ ଯୌତୁକ ଦଶହଜାର ଟଙ୍କା ଦାବି କରିଛନ୍ତି ।"

ଏ ଖବର ଶୁଣି ପାର୍ବତୀର ମନ ଟିକେ ଦବିଗଲା । ରାଗିଣୀ ସେମାନଙ୍କର ଏକମାତ୍ର ସନ୍ତାନ । ରାଜେଶ ଝିଅ ବାହାଘର ପାଇଁ ଯାହା ସଞ୍ଚୟ କରିଛି ସେଥିରେ ଆଉ କିଛି ମିଶାଇଲେ ଖୁବ୍ ହେଲେ ପାଞ୍ଚହଜାର ହେବ ।

ରାଗିଣୀ ଦୁଆର ସେପଟୁ ବାପା ମା'ଙ୍କ କଥା ଶୁଣୁଥିଲା । ବାପାଙ୍କ କଥା ଶୁଣି କହିଲା, "ଯେଉଁ ଲୋକ ଦଶହଜାର ଟଙ୍କା ଯୌତୁକ ମାଗୁଛି ସେ ମୋର ଆଦୌ ପସନ୍ଦ ନୁହେଁ ।"

"ଏଇ, ତୁ ଚୁପ୍‌ଚାପ୍ ଏଠୁ ଚାଲିଯାଆ ତ ।" ପାର୍ବତୀ ଝିଅକୁ ଆକଟିଲା । ପରେ ରାଜେଶଙ୍କୁ କହିଲା, "ଦେଖ ସେମାନଙ୍କର ତ କନ୍ୟା ପସନ୍ଦ ହୋଇଛି । ପଇସା କଥା ଆମେ ଚିନ୍ତା କଲେ ଏତେ ଭଲ ପ୍ରସ୍ତାବ ଭାଙ୍ଗିଯିବ । ଆଉ ଏ ଜୀବନରେ ଝିଅର ବାହାଘର ହୋଇ ପାରିବ ନାହିଁ ।"

"ତେବେ ମୁଁ କ'ଣ କରିବି କୁହ ? କାହା ଘରୁ ଚୋରି କରି ଆଣିଦେବି ନା କ'ଣ ?" ରାଜେଶ ବିରକ୍ତହୋଇ କହିଲା ।

ଦୁଇଜଣ ବସି ଏପରି ବାକ୍‌ବିତଣ୍ଡା କରି କରି ଅନେକ ସମୟ ଗଲାଣି । ସନ୍ଧ୍ୟା ଗଡ଼ିଗଲାଣି । ଦୁହେଁ ବିଚାର କରୁଛନ୍ତି ଆଉ ପାଞ୍ଚହଜାର କେଉଁଠୁ ଆଣିବେ । ଠିକ୍ ଏଇ ସମୟରେ କିଏ ଜଣେ ଆସି କବାଟ ଠକ୍ ଠକ୍ କଲା । ରାଜେଶ

ଚନ୍ଦ୍ରକାନ୍ତ



କବାଟ ଖୋଲି ଦେଖିଲା ବାହାରେ ଜଣେ କିଏ ଅଚିହ୍ନା ଲୋକ । ସେ ରାଜେଶଙ୍କୁ କହିଲା, "ରାମ-ଗୁପ୍ତ ଏ ବାକ୍ସଟି ଆପଣଙ୍କୁ ଦେଇଦେବାକୁ କହିଛନ୍ତି । ଏଥିରେ ଆଠହଜାର ଟଙ୍କାର ଅଳଙ୍କାର ଅଛି ରଖନ୍ତୁ । ଆଉ ଆପଣଙ୍କର କିଛି ଖବର ରାମଗୁପ୍ତଙ୍କ ପାଖକୁ ଦେବାର ଥିଲେ କୁହନ୍ତୁ ।" ଏକଥା କହି ଆଗନ୍ତୁକଟି ରାଜେଶ ହାତରେ ଛୋଟ ଅଳଙ୍କାର ବାକ୍ସଟି ଧରାଇ-ଦେଲା ।

ଏସବୁ ରାଜେଶଙ୍କୁ ଖୁବ୍ ବିଚିତ୍ର ଲାଗିଲା । ରାମଗୁପ୍ତ ସହ ତା'ର ପରିଚୟ ନାହିଁ । ତେଣୁ ସେ ପଚାରିଲା, "କେଉଁ ରାମଗୁପ୍ତ ଏସବୁ ପଠାଇଛନ୍ତି ?" ରାଜେଶର କଥା ଶୁଣି ଆଗନ୍ତୁକ ଅଳ୍ପ ଇତସ୍ତତଃ ହୋଇ ପାଖରେ ଥିବା ଓସ୍ତ-ଗଛ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି କହିଲା, "ସେଠ୍ ରାମଗୁପ୍ତ ମୋତେ କହିଥିଲେ । ଓସ୍ତ-ଗଛ ସାମନାରେ ଥିବା ଘରକୁ ଯାଇ ନାଥ-ବାବୁଙ୍କୁ ଦେବାକୁ । ଆପଣ ନାଥବାବୁ ତ ?"

ରାଜେଶ କିଛି ଜବାବ ଦେବାକୁ ଯାଉଛି; ଏହି ସମୟରେ ପାର୍ବତୀ କହିଲା, "ଯେଉଁଠି ଦେବାକୁ ନିର୍ଦ୍ଦେଶ ଦିଆଯାଇଥିଲା ତୁମେ ସେଇ-ଠାକୁ ଆଣି ଦେଇଛ । ପ୍ରକୃତରେ ରାମଗୁପ୍ତର ଅଳଙ୍କାର କାଲି ପଠାଇବାର ଥିଲା । ତେଣ କାହିଁକି ହେଲା ତ୍ରୁଟି ତ ।"

"ଠିକ୍ ଅଛି" କହି ଆଗନ୍ତୁକଟି ଚାଲିଗଲା । ତା'ପରେ ରାଜେଶ ଓ ପାର୍ବତୀ ଚଟାପଟ୍ କବାଟ ବନ୍ଦ କରି ବାକ୍ସଟି ଖୋଲି ଦେଖିଲେ । ନୂଆ ଚକଚକ ଚମତ୍କାର ଅଳଙ୍କାରସବୁରେ ବାକ୍ସଟି ଭର୍ତ୍ତି ।

"ଓହୋ ଆଠହଜାର ଟଙ୍କାର ଅଳଙ୍କାର । ଆମ ଝିଅର ବାହାଘର ହୋଇଗଲା ଜାଣ ।" ପାର୍ବତୀ ଖୁସୀ ହୋଇ କହିଲା ।

"ଜଣା ନାହିଁ ଏ ଅଳଙ୍କାର କାହାର । ମୋ ବାହାଘର କିପରି ଏ ଅଳଙ୍କାର ଯୋଗୁ ହେବ ?" ରାଗିଣୀ ପଚାରିଲା ।

"ତୁ ଚୁପ୍ ହୋଇ ଏଠାରୁ ଚାଲିଯା'ତ ।" ପାର୍ବତୀ ପୁଣି ଝିଅକୁ ଆକଟିଲା ।

"ଈଶ୍ୱର ଆମ ଉପରେ ଦୟା କରି ଏ ଅଳଙ୍କାର ଆମ ଝିଅର ବିବାହ ପାଇଁ ପଠାଇ-ଦେଇଛନ୍ତି । ଦୁଇଦିନ ମଧ୍ୟରେ ଏସବୁ ତରଲାଇ ବିକ୍ରି କରିଦେବା ।" ରାଜେଶ କହିଲା ।



"ଈଶ୍ୱର ସିନା ସୁଯୋଗ ଦେଲେ । ତେବେ ତାକୁ ତ ସଦୁପଯୋଗ କରିବା ଦରକାର । ସକାଳେ ସେଠ୍ ରାମଗୁପ୍ତ ଜାଣିଯିବ ଘଟଣାଟା କ'ଣ । ତା'ପରେ ? ସେ ଲୋକ ଆସି ନିଶ୍ଚୟ ବାକ୍ସ ମାଗିବ । କ'ଣ କରାଯିବ ?" ପାର୍ବତୀ ମନରେ ଶଙ୍କା ରଖି କହିଲା ।

"ତେବେ ଚାଲ ଗୋଟାଏ କାମ କରିବା । ଏ ବାକ୍ସକୁ ନେଇ ବାଡ଼ିରେ ପୋତିଦେବା । ପଚାରିଲେ କହିବା ଆମେ ଜାଣିନୁ । ଆଉ ବାକ୍ସ ଦେବାର ଦେଖିଛି ବା କିଏ ?" ରାଜେଶ କହିଲା । ତା'ପରେ ସ୍ୱାମୀସ୍ତ୍ରୀ ଦୁହେଁ ମିଳି ନଡ଼ିଆଗଛ ପାଖରେ ବାକ୍ସଟି ନେଇ ପୋତି-ପକାଇଲେ । ସକାଳ ହେଉ ହେଉ କିଏ ଜଣେ ଆସି ଦ୍ୱାର ପାଖରେ ଚିତ୍କାର କଲା । ସ୍ୱାମୀସ୍ତ୍ରୀ ଦୁହେଁ ସାହସ ସଞ୍ଚୟ କରି କବାଟ ପାଖରେ ପହଞ୍ଚିଲେ । ଦେଖିଲେ ପୂର୍ବରାତିର ଆଗନ୍ତୁକଟି କପାଳରେ ହାତମାରି କହୁଛି, "ଓହୋ ସେ ବାକ୍ସ ତ ଅନ୍ୟ ଏକ ଶହରରେ ରହୁଥିବା ନାଥ-ଦାସର । ସେଠ୍‌ସାହେବ ମୋତେ ବ୍ୟତିବ୍ୟସ୍ତ କରି ପକାଇଲେଣି । ଦୟାକରି ବାକ୍ସଟି ଶୀଘ୍ର ଦେଇଦିଅ ।"

ରାଜେଶ କହିଲା, "ସକାଳୁ ସକାଳୁ କ'ଣ ମଦ ଖାଇ ଆସିଛ କି ? ଏପରି କଥା କହୁଛ ।"

"ବୋଧେ ଏ ଜଣେ ପାଗଳ । କବାଟ ବନ୍ଦ-କରି ଚାଲିଆସ ।" ପାର୍ବତୀ କହିଲା ।

ଆଗନ୍ତୁକ ମଧ୍ୟ ଆହୁରି ଜୋର୍‌ରେ ଚିତ୍କାର କରି କହୁଥାଏ । ରାଜେଶ ଏସବୁକୁ ଖାତିର ନ କରି କହିଲା, ଅନ୍ଧକାରରେ ବୋଧେ ଅନ୍ୟ କୌଣସି ଘରେ ଦେଇଦେଇଥିବ । ଆମ ଘରେ ନୁହେଁ । କାହିଁକି ସକାଳଟାରୁ ଆସି ଗୋଳମାଳ କରୁଛ ?" ପାର୍ବତୀ ମଧ୍ୟ ରାଜେଶକୁ ସମର୍ଥନ କଲା ।

"ଆପଣମାନଙ୍କର ବାହାଘର ପାଇଁ ବ୍ୟସ୍ତ ହେବା ଦରକାର ନାହିଁ, ବାହାଘର ବନ୍ଦ ।" ଏକଥା କହି ଗୋଟିଏ ଖୁଣ୍ଟ ଆଢ଼ୁଆଳରୁ ଲୁଚି-ଥିବା ବରପିତା ବାହାରିଆସିଲେ । ତାଙ୍କୁ ଦେଖି ରାଜେଶ ଓ ପାର୍ବତୀଙ୍କ ମୁହଁ କଳା ପଡ଼ିଗଲା । ସେ କହିଲେ, "ଆମର ପଇସାକଉଡ଼ି ଯୌତୁକ ବି ଦରକାର ନାହିଁ । ଆମର ଦରକାର ଥିଲା ପରିବାରର ପ୍ରତିଷ୍ଠା । ସେଇଟା ଜାଣିବା ପାଇଁ ସୁନାରଙ୍ଗ ଦିଆ ଅଳଙ୍କାର ପଠାଇ ମୁହିଁ ଏଇ

ନାଟକ କରାଇଥିଲି ତୁମର ମତଲବ ଜାଣିବାକୁ । ଆଜି ଜାଣିଲି ତୁମ୍ଭେମାନେ ଧନପାଇଁ ମଣିଷ ମଧ୍ୟ ମାରିଦେଇ ପାରିବ । ସେପରି ପିତାମାତାଙ୍କ ସନ୍ତାନକୁ ମୁଁ ବୋହୂ କରି ଆଣିବାକୁ ଚାହେଁ-ନାହିଁ ।"

ଠିକ୍ ସେତିକିବେଳେ ରାଗିଣୀ ସେଠାରେ ଅଚାନକ ପହଞ୍ଚି କହିଲା, "ଦେଖନ୍ତୁ ଆପଣଙ୍କର ଏ ଭୁଲ ଧାରଣା ମୁଁ ସଂଶୋଧନ କରି-ଦେଉଛି । ପିତାମାତାଙ୍କର ଆକୃତି ନେଇ ସନ୍ତାନ ଜନ୍ମ ହୁଏ, ଗୁଣ ନେଇ ନୁହେଁ । ମୋ ବାପାମା' ଉଠିପଡ଼ିଲେ ବାକ୍ସଟି ପୋଲିସ୍‌କୁ ଦେବା ସମ୍ଭବ ନୁହେଁ ଭାବି ସେମାନେ ଉଠିବାର ବହୁତ ଆଗରୁ ମୁଁ ବାକ୍ସଟି ନେଇ ପୋଲିସ୍ ହାତରେ ଥାନାରେ ଦେଇଆସିଛି । ତେଣୁ ଆପଣ ନିଜର ସୁନାରଙ୍ଗଦିଆ ଅଳଙ୍କାରସବୁ ଥାନାରୁ ନେଇଯାନ୍ତୁ । ଆଜି ଏ ବିବାହ ନ ହେବାରୁ ଆମର ଏମିତି କିଛି ନଷ୍ଟ ହୋଇଯାଇ ନାହିଁ ।" ଏକଥା କହି ରାଗିଣୀ ଘର ଭିତରକୁ ଚାଲିଗଲା ।

ରାଗିଣୀ ମୁହଁରୁ ଏ କଥା ଶୁଣି ରାଜେଶ ଓ ପାର୍ବତୀ ବାବା ହୋଇଗଲେ । ହେଲେ ବରପିତା ମୁହଁ ତଳକୁ କରି ସେଠାରୁ ଚାଲିଗଲେ ।

ସେହିଦିନ ସନ୍ଧ୍ୟାବେଳକୁ ରାଗିଣୀ କୂଅରୁ ପାଣି କାଢ଼ୁଥିଲା । ଏହି ସମୟରେ ପୂର୍ବ ପ୍ରସ୍ତାବିତ ବରପିଲାଟି ଆସି ସେଠି ପହଞ୍ଚି କହିଲା, "ରାଗିଣୀ, ମୋ ବାପା ଯେଉଁ ନାଟକ କଲେ ସେସବୁ ବିଷୟରେ ମୁଁ ଆଦୌ କିଛି ଜାଣେ ନାହିଁ । ତୁମମାନଙ୍କର ଏପରି ଅପମାନ ହେଲା ସେଥିପାଇଁ ମୁଁ ଅତ୍ୟନ୍ତ ଦୁଃଖିତ ଓ କ୍ଷମା ମାଗିବାପାଇଁ ଆସିଛି । ଆଜି ତୁମେ ମୋତେ ଯଦି କ୍ଷମା ଦେଇପାରିବ ତ ମୁଁ ତୁମକୁ ବିବାହ କରି ଖୁବ୍ ଖୁସୀ ହେବି ।"

ଏକଥା ଶୁଣି ରାଗିଣୀ ଅଳ୍ପ ହସି ଲଜ୍ଜାରେ ମଥା ତଳକୁ କରି ନୀରବ ସମ୍ମତି ଜଣାଇଲା ।





# ହୃତଧନ ସନ୍ଧାନ

ଶ୍ରୀବସ୍ତି ନଗରୀରେ ସେତେବେଳେ ରାଜତ୍ୱ କରୁଥିଲେ ରାଜା ପ୍ରସେନଜିତ୍ । ଦୂର ଦେଶର ଜଣେ ବ୍ରାହ୍ମଣ ପଣ୍ଡିତ ସେ ନଗରୀକୁ ଆସି ଜଣେ ବଶିଷ୍ଟ ବଣିକଙ୍କ ଘରେ ଆଶ୍ରୟ ନେଲେ । ବଣିକ ତାଙ୍କର ଏପରି ଚର୍ଚ୍ଚା କରୁଥାନ୍ତି ଯେ ପଣ୍ଡିତଙ୍କୁ କାଣିକଉଡ଼ିଟିଏ ଖର୍ଚ୍ଚ କରିବାକୁ ପଡ଼ୁ ନ ଥାଏ । କିନ୍ତୁ ତାଙ୍କର ଉପାର୍ଜନ ବହୁତ ହେଉଥାଏ । ଆଖପାଖରେ ଧନୀଲୋକେ ତାଙ୍କୁ ନିମନ୍ତ୍ରଣ କରି ତାଙ୍କଠାରୁ ଶାସ୍ତ୍ର ଓ ମାଣ୍ଡନସୂତ୍ରର ବ୍ୟାଖ୍ୟା ଶୁଣୁଥାନ୍ତି ଓ ତାଙ୍କୁ ମୋଟା ପୁରସ୍କାର ଦେଉଥାନ୍ତି ।

ପଣ୍ଡିତେ ଟଙ୍କାତକ କରିବେ କ'ଣ ? ସେ ତାକୁ ସ୍ୱର୍ଣ୍ଣମୁଦ୍ରାକୁ ବଦଳାଇ ସାଇତି ରଖୁଥାନ୍ତି । ଯେତେବେଳେ ପାଖରେ ହଜାରେ ସ୍ୱର୍ଣ୍ଣମୁଦ୍ରା ଜମା ହୋଇଗଲା, ସେତେବେଳେ ସେ ତାକୁ ବଣବୁଦାରେ ଗୋଟିଏ ବଣୁଆ ଖେସାରି ଲତା ତଳେ ପୋତି ରଖିଲେ ।

ଶ୍ରାବସ୍ତିରେ ପଣ୍ଡିତଙ୍କର ନିଜର ବୋଲି କେହି ନ ଥାନ୍ତି । ସେ ପ୍ରାୟ ପ୍ରତିଦିନ ଥରେ ଯାଇ ମାଟି ଖୋଳି ପୋତାଧନ ଦେଖି ସନ୍ତୁଷ୍ଟ ହୋଇ ଫେରି ଆସୁଥାନ୍ତି ।

ଦୈବକୁ ଦିନେ ସେ ଯାଇ ମାଟି ଖୋଳି ଦେଖିଲା ବେଳକୁ ପୋତାଧନ ଗାଏବ ହୋଇ-ଯାଇଛି । ପଣ୍ଡିତଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ଚାରିଆଡ଼କୁ ଅନାଇଲେ ଓ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ସେ ବଣୁଆ ଖେସାରି ଲତା ମଧ୍ୟ ସେଠାରେ ଆଉ ନାହିଁ ।

ଦୁଃଖ କଥା ସେ କାହାକୁ କହିବେ ? କିଏ ବା ତାଙ୍କୁ ହୃତ ସମ୍ପଦ ଫେରାଇଦେବ ? ସେ କାନ୍ଦି କାନ୍ଦି ଶେଷକୁ ନଈକୁ ଡେଇଁପଡ଼ି

(ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)

ଜୀବନ ହାରିବାକୁ ସ୍ଥିର କଲେ ।

ସେ ନଈ କୂଳକୁ ଯାଇ ଡେଇଁବାର ଉଦ୍ୟମ କରୁଛନ୍ତି, ସେତିକବେଳେ ସ୍ନାନ ସମାପନ କରି ଉଠୁଥିବା ରାଜା ପ୍ରସେନଜିତ୍ ତାଙ୍କୁ ଦେଖି-ପକାଇଲେ ।

"ଆରେ, ଆରେ, ତୁମେ କ'ଣ କରୁଛ ?" ରାଜା ପଣ୍ଡିତଙ୍କୁ ଧମକ ଦେଲେ ।

ପଣ୍ଡିତେ ଚମକିପଡ଼ିଲେ । ତା'ପରେ ରାଜାଙ୍କୁ ଚିହ୍ନିପାରି ନିଜର ଦୁଃଖ ଗପିଗଲେ ।

ରାଜା କହିଲେ, "ଯଦି ଧନ ଚୋରି ହୋଇଛି, ତେବେ ଚୋରର ଧରିବାକୁ ମୁଁ ଅଛି । ତୁମେ ଆତ୍ମହତ୍ୟା କରିବ କାହିଁକି ? ଆଚ୍ଛା, କହିଲ, ତୁମେ ଯେଉଁଠି ଧନ ପୋତିଥିଲ ସେ ସ୍ଥାନର କିଛି ବିଶେଷ ପ୍ରକାର ଚିହ୍ନ ଥିଲା ?"

"ମହାରାଜ, ସେଠି ଗୋଟାଏ ଖେସାରି ଲତା ମାଡ଼ିଥିଲା । ମୋ ପୋତାଧନ ସାଙ୍ଗକୁ ସେ ଲତା ମଧ୍ୟ ଉଭେଇଯାଇଛି ।" ପଣ୍ଡିତେ କହିଲେ ।

"ହଇହେ ପଣ୍ଡିତେ ସେଇଟା କ'ଣ ଗୋଟାଏ ଚିହ୍ନ ଭଳି ଚିହ୍ନ ? ବଣ ଭିତରେ ତ ଶହେ ସ୍ଥାନରେ ସେ ଲତା ଥାଇପାରେ !" ରାଜା ମନ୍ତବ୍ୟ ଦେଲେ ।

"ନା, ମଣିମା । ଏ ବଣରେ ମାତ୍ର ଗୋଟାଏ ବଣୁଆ ଖେସାରି ଥିଲା । ସେ ଲତା ବେଶୀ ହୁଏ ନାହିଁ । ସେ ଲତାର ବ୍ୟବହାର ଖୁବ୍ କମ୍ ଲୋକେ ଜାଣନ୍ତି ।" ପଣ୍ଡିତ କହିଲେ ।

"ତୁମେ ସେଠାରେ ଧନ ପୋତିବାର କେବେ



ଜାଣି ନ ଥିଲେ ? କେହି ତୁମକୁ ସେଠାକୁ ଯିବାର ଦେଖି ନ ଥିଲେ ?" ରାଜା ପଚାରିଲେ ।

"ମହିମା, କେହି ଜାଣି ନ ଥିଲେ ବୋଲି ମୁଁ ଦୃଢ଼ ଭାବରେ କହିପାରେ ।" ପଣ୍ଡିତ ଉତ୍ତର ଦେଲେ ।

ରାଜା ପଣ୍ଡିତଙ୍କୁ ଧୈର୍ଯ୍ୟ ଧରିବାକୁ କହି ନଅରକୁ ଫେରିଲେ । ମନ୍ତ୍ରୀଙ୍କୁ କହିଲେ, ରାଜ୍ୟର ସବୁଠାରୁ ବଡ଼ ବୈଦ୍ୟମାନଙ୍କୁ ଡକାଇପଠାଅ । ମୋର ବେମାର ହୋଇଛି ବୋଲି କୁହ ।"

ରାଜା ବିଶ୍ରାମ ନେଲେ । ଜଣକ ପରେ ଜଣେ ବୈଦ୍ୟ ଆସନ୍ତେ ରାଜା ତାଙ୍କୁ ପଚାରନ୍ତି, "ଗତ ଦୁଇଦିନ ଭିତରେ ତୁମେ କେଉଁ କେଉଁ ରୋଗୀ ଦେଖିଛ ? ସେମାନଙ୍କୁ ବା କି ପ୍ରକାର ପଥ୍ୟ ଓ ଔଷଧ ଯୋଗାଇ ଦେଇଛ ?

ଜଣେ ବୈଦ୍ୟ କହିଲେ, "ଦୁଇଦିନ ଭିତରେ ମୁଁ ଜଣେ ରୋଗୀ ଦେଖିଛି । ସେ ହେଲେ ବ୍ୟବସାୟୀ ଦତ୍ତରାମ ।"

"ତାଙ୍କୁ କି ଔଷଧ ଦେଇଛ ?" ରାଜା ପଚାରିଲେ ।

"ତାଙ୍କ ରୋଗ ପାଇଁ ବଣୁଆ ଖେସାରିର ମୂଳ ଲୋଡ଼ା ଥିଲା । ଦୈବକୁ, ମୋର ଜଣେ ସହକାରୀ ବଣତମାମ ଖୋଜି କେବଳ ଗୋଟିଏ ସ୍ଥାନରୁ ସେ ଲତା ପାଇଲା ।" ବୈଦ୍ୟ କହିଲେ ।

ରାଜା ସଳଖିବସି କହିଲେ, "ତୁମର ସେ ସହକାରୀକୁ ପଠାଇଦିଅ ।"

ଅବିଳମ୍ବେ ବୈଦ୍ୟଙ୍କ ସହକାରୀ ଆସିଲା ।



ରାଜା ତାଙ୍କୁ ପଚାରିଦେଲେ, "ହଇରେ, ସେଦିନ ବଣୁଆ ଖେସାରି ଲତାର ମୂଳ ଖୋଳିବାକୁ ଯାଇ ଯେଉଁ ହଜାରେ ସ୍ୱର୍ଣ୍ଣମୁଦ୍ରା ପାଇଲୁ, ତାକୁ କଲୁ କ'ଣ ?"

ପ୍ରଥମେ ସହକାରୀ କିଛି ବୁଝି ନ ପାରିଲା ଭଳି ଜୁଳୁ ଜୁଳୁ ଅନାଇଲା ।

ରାଜାଙ୍କ ପ୍ରଖର ଦୃଷ୍ଟି ଆଗରେ ଥରି ଥରି ସହକାରୀ କହିଲା, "ଘରେ ରଖିଛୁ, ମଣିମା । କ୍ଷମା କରନ୍ତୁ ।"

"ଖାଲି କ୍ଷମା ନୁହେଁ, ତୋତେ ଉପଯୁକ୍ତ ପୁରସ୍କାର ଦେବି । ଯା, ସେତକ ନେଇଆ । ତାହା ଜଣେ ବ୍ରାହ୍ମଣଙ୍କ ପୋତାଧନ ।" ରାଜା କହିଲେ ।

"ଯେ ଆଜ୍ଞା, ମହାରାଜ !" କହି ସହକାରୀ ଯାଇ ସ୍ୱର୍ଣ୍ଣମୁଦ୍ରାତକ ଆଣିଦେଲା । ରାଜା ତାକୁ ପୁରସ୍କାର ଦେଲେ ଓ ପଣ୍ଡିତଙ୍କୁ ତାଙ୍କ ଧନ ଫେରାଇଦେଲେ ।

ଏସବୁ ଘଟଣା ଦେଖୁଥିଲେ ମନ୍ତ୍ରୀ । ସେ ବିସ୍ମିତ ହୋଇ ପଚାରିଲେ, "ମହାରାଜ ! ଆପଣ କିମିତି ଏ ଚୋରିର ରହସ୍ୟର ସମାଧାନ କରିପାରିଲେ ?"

ରାଜା କହିଲେ, "ପଣ୍ଡିତ ଯେତେବେଳେ କହିଲେ କି ବଣୁଆ ଖେସାରିର ବ୍ୟବହାର ଖୁବ୍ କମ୍ ଲୋକ ଜାଣନ୍ତି, ସେତେବେଳେ ମୁଁ ବୁଝିଲି ତାହା ନିଶ୍ଚେ ବୈଦ୍ୟମାନେ ବ୍ୟବହାର କରୁଥିବେ । ବଣୁଆ ଖେସାରି ଲତା ତଳେ ସେ ଧନ ପୋତିଥିଲେ । ତେଣୁ ଦୁଇଦିନ ଭିତରେ କୌଣସି ବୈଦ୍ୟ ନ ହେଲେ ବୈଦ୍ୟଙ୍କ ତରଫରୁ କେହି ସେ ଲତା ମୂଳ ଖୋଳିବାକୁ ଯାଇ ଧନର ସନ୍ଧାନ ପାଇ ତାକୁ ଉଠାଇ ନେଇଛି । ସେ ବୈଦ୍ୟଟି କିଏ ? ତେଣିକି ସେତକ ଠାବ କରିବା ହେଲା ମୋର କାମ ।"

"ଧନ୍ୟ ଆପଣଙ୍କ ବୁଦ୍ଧି, ମହାରାଜ !" ମନ୍ତ୍ରୀ କହିଲେ ।





# ବେଦରେ ଇନ୍ଦ୍ର

ପୃଥିବୀରେ ଯେତେ ପୋଥି ପୁରାଣ ରହିଛି, ତହିଁ ମଧ୍ୟରୁ ଭାରତବର୍ଷରେ ସବୁଠାରୁ ଅଧିକ ପୁରୁଣା ପୋଥି ପୁରାଣ ଦେଖିବାକୁ ମିଳେ । ପୃଥିବୀର ପ୍ରାଚୀନତମ ଗ୍ରନ୍ଥ ହେଲା ବେଦ । ଋଗ୍‌ବେଦ, ସାମବେଦ, ଯଜୁର୍ବେଦ ଓ ଅଥର୍ବ ବେଦ—ଏହି ଚାରିଗୋଟି ବେଦ ପ୍ରାଚୀନ ମୁନି-ଋଷିମାନଙ୍କର ଅମାପ ଜ୍ଞାନର ଭଣ୍ଡାର ।

ପ୍ରାଚୀନ ପୋଥି ପୁରାଣରେ ଦେବଦେବୀଙ୍କର ଅନେକ କାହାଣୀ ପଢ଼ିବାକୁ ମିଳେ । ସେସବୁ କାହାଣୀ ଛଳରେ ଲେଖା ହୋଇଥିଲେ ମଧ୍ୟ ସେସବୁର ଭିନ୍ନ ଆଭ୍ୟନ୍ତରୀଣ ଅର୍ଥ ରହିଛି । ଏସବୁ ଦେବଦେବୀମାନେ ସ୍ଥୂଳ ଜଗତ ଏବଂ ଭଗବାନଙ୍କ ଭିତରେ ବ୍ୟାପ୍ତ ରହିଥିବା ଆଧି-ଭୌତିକ ସ୍ତରର ଶକ୍ତି ।

ବହୁ ପ୍ରାଚୀନ କାଳରେ ଇନ୍ଦ୍ର ବୋଇଲେ ଜଣେ ନିର୍ଦ୍ଦିଷ୍ଟ ଦେବତାଙ୍କୁ ବୁଝାଉଥିଲା । କାଳକ୍ରମେ ଇନ୍ଦ୍ରତ୍ୱ ଏକ ପଦକୁ ବୁଝାଇଲା । ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ବ୍ୟକ୍ତି ଏହି ପଦ ଅଧିକାର କରିଥିଲେ । ସେମାନଙ୍କ ଭିତରେ ଥିଲେ ସୁଶାନ୍ତି, ଶିବି, ମନୋଜ ଏବଂ ନହୁଷ । ନହୁଷ ଅଳ୍ପ କାଳ ଇନ୍ଦ୍ରତ୍ୱ ଭୋଗ କରିବା ପରେ ପଦଭ୍ରଷ୍ଟ ହୋଇଥିଲେ । କେତେକ ବିଶେଷ ଧରଣର ଯାଗଯଜ୍ଞ ଓ ସାଧନା କଲେ ଇନ୍ଦ୍ରପଦ ମିଳିପାରେ ବୋଲି ବିଶ୍ୱାସ ଥିଲା ।

ବୈଦିକ କାଳରେ ଇନ୍ଦ୍ର ସମ୍ପର୍କରେ ଯେପରି ଧାରଣା ଥିଲା, ପୁରାଣ ଯୁଗକୁ ସେ ଧାରଣା ବଦଳିଯାଇଥିଲା ।

ବୈଦିକ କାଳରେ ଇନ୍ଦ୍ର ସର୍ବଶ୍ରେଷ୍ଠ ଦେବତା ରୂପେ ଗଣ୍ୟ ହେଉଥିଲେ । ଋଗ୍‌ବେଦରେ ପ୍ରାୟ ଅଢ଼େଇଶହ ସୂକ୍ତ ଇନ୍ଦ୍ରଙ୍କ ପାଇଁ ଉଦ୍ଦିଷ୍ଟ ।



ଥିଲା କପିଳ ବା ହରିତ ବର୍ଣ୍ଣ । କୌଣସି କୌଣସି ସୂକ୍ତରେ ଏହାଙ୍କ ଦେହ ପୁଣି ସୁନା ରଙ୍ଗ ବିଶିଷ୍ଟ ଥିବାର କୁହାଯାଇଛି । ଏହା ବହୁ ଦୀର୍ଘ, ବଳିଷ୍ଠ ଏବଂ ସୁନ୍ଦର । ଇନ୍ଦ୍ର ନିଜ ଇଚ୍ଛା ଅନୁସାରେ ନାନା ପ୍ରକାର ରୂପ ଧାରଣ କରିପାରୁଥିଲେ ।

ଇନ୍ଦ୍ର ମୁଖ୍ୟତଃ ବଜ୍ରାୟୁଧ ବ୍ୟବହାର କରୁଥିଲେ । ବଜ୍ର ଲୌହଜାତୀୟ ଧାତୁ-ଦ୍ରବ୍ୟ ଦ୍ୱାରା ନିର୍ମିତ ହୋଇଥିବାର କୌଣସି କୌଣସି ସୂକ୍ତରେ ବର୍ଣ୍ଣିତ ହୋଇଥିବା ସ୍ଥଳେ ଅନ୍ୟ କେତେକ ସୂକ୍ତରେ ତାହା ସୁନା ଦ୍ୱାରା ପ୍ରସ୍ତୁତ ବୋଲି କୁହାଯାଇଛି । ବଜ୍ର ପଥର ଦ୍ୱାରା ନିର୍ମାଣ ହୋଇଥିବା ବିଷୟ ମଧ୍ୟ ଉଲ୍ଲେଖ ରହିଛି ।

ତେବେ ବଜ୍ରହିଁ ଇନ୍ଦ୍ରଙ୍କର ଏକ ମାତ୍ର ଅସ୍ତ୍ର ନୁହେଁ । ସେ ସୁନାନିର୍ମିତ ଧନୁ ଏବଂ ଶତେ ପର ଖଞ୍ଜା ହୋଇଥିବା ଶର ବ୍ୟବହାର କରୁଥିବା ବିଷୟ ମଧ୍ୟ କୁହାଯାଇଛି । ବଜ୍ର ଏବଂ ଧନୁ ବ୍ୟତୀତ ଏକ ପ୍ରକାର ଅଙ୍କୁଶ ଏବଂ ଜାଲ ମଧ୍ୟ ବ୍ୟବହାର କରୁଥିଲେ ।

ଇନ୍ଦ୍ରଙ୍କ ରଥର ଗତି ଏତେ ବେଶୀ ଯେ ତାହା ମଣିଷର ମନର ଗତିକୁ ମଧ୍ୟ ବଳିଯାଇ ପାରିବାର ଉଲ୍ଲେଖ ରହିଛି । ଏହି ରଥ ଦୁଇଟି ଅଶ୍ୱ ଦ୍ୱାରା ଚାଳିତ ହେଉଥିଲା । ଅବଶ୍ୟ କୌଣସି କୌଣସି ସ୍ଥାନରେ ଅଶ୍ୱର ସଂଖ୍ୟା

ଅନ୍ୟ କୌଣସି ଦେବତାଙ୍କୁ ସେଭଳି ଗୁରୁତ୍ୱ ଦିଆହୋଇନାହିଁ । କୁହାଯାଏ ଆର୍ଯ୍ୟମାନେ ଇରାନ୍ ଅଞ୍ଚଳରୁ ଭାରତବର୍ଷକୁ ଆସିଥିଲେ । ତାହା ସତ୍ୟ ହୋଇଥିଲେ ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁହିଁ ସେମାନଙ୍କ ମଧ୍ୟରେ 'ଇନ୍ଦ୍ର' ଶବ୍ଦ ପ୍ରଚଳିତ ଥିଲା । ଇନ୍ଦ୍ର-ଧାରଣାର ଉତ୍ପତ୍ତି ସମ୍ପର୍କରେ କିଛି କହିହେବ ନାହିଁ । ତେବେ ଦାନବ-ବିନାଶକ, ଜନକଷ୍ଟନିଦୂରକ ରୂପେ ତାଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ସେ କେବେ ପରାଜୟ ଲଭୁ ନ ଥିଲେ ।

ବେଦରେ ଏହାଙ୍କ ଶରୀରର ସବିଶେଷ ବର୍ଣ୍ଣନା ଦିଆଯାଇଛି । ଏହାଙ୍କ କେଶ ଓ ଦେହ



ଶତ୍ରେ ହଜାରେ ବୋଲି ମଧ୍ୟ କୁହାଯାଇଛି ।

ବୈଦିକ କାଳରେ ଯେଉଁ ଦେବତାମାନଙ୍କୁ ସମ୍ମାନ ଦିଆଯାଉଥିଲା, ସେମାନେ ସୋମରସ ପାନ କରିବାକୁ ସୁଖ ପାଉଥିଲେ ବୋଲି କୁହାଯାଇଛି । ଇନ୍ଦ୍ର ସବୁ ଦେବତାଙ୍କ ମଧ୍ୟରେ ସବୁଠାରୁ ଅଧିକ ସୋମରସ-ପ୍ରିୟ ଥିଲେ । କିନ୍ତୁ ଏହି ସୋମରସ କ'ଣ ? ଏ ସମ୍ପର୍କରେ ଐତିହାସିକମାନେ କୌଣସି ଆଲୋକପାତ କରିପାରିନାହାନ୍ତି । ସାଧାରଣତଃ ଧରିନିଆଯାଏ ଏହା ଏକ ପ୍ରକାର ଉତ୍ତେଜକ ପାନୀୟ । କିନ୍ତୁ ବେଦର ମର୍ମ ସମ୍ପର୍କରେ ଧାରଣା ଥିବା ବ୍ୟକ୍ତିମାନେ ଏଭଳି ଅର୍ଥ ଗ୍ରହଣ କରନ୍ତି ନାହିଁ । ବେଦରେ ଯାହାସବୁ ବର୍ଣ୍ଣିତ ହୋଇଛି, ସେସବୁର ସ୍ଥୂଳ ଅର୍ଥ ପଛରେ ଗଭୀର ସୂକ୍ଷ୍ମ ଅର୍ଥ ରହିଥିବା ସ୍ୱାଭାବିକ ।

ଋଗ୍‌ବେଦର ଦୁଇଟି ସୂକ୍ତରେ ଇନ୍ଦ୍ରଙ୍କ ଜନ୍ମର ବିବରଣୀ ଦିଆଯାଇଛି । ସେ ମାତାଙ୍କ ପାର୍ଶ୍ୱଭେଦ କରି ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜ୍ୟୋତିରେ ତତ୍‌କ୍ଷଣାତ୍ ନଭୋମଣ୍ଡଳ ଉଜ୍ଜ୍ୱଳ ହୋଇଉଠିଲା ।

ତାଙ୍କ ଜନ୍ମ ମୁହୂର୍ତ୍ତରେ ପର୍ବତ ସମେତ ପୃଥିବୀ କମ୍ପିତ ହୋଇଥିଲା । ଏପରିକି ଆକାଶ ବ୍ୟାପି ଆଲୋଡ଼ନ ଅନୁଭୂତ ହୋଇଥିଲା ।

ଇନ୍ଦ୍ରଙ୍କ ଜନନୀ ଅଦିତି ବୋଲି କୁହାଯାଏ ।



ରାକ୍ଷସ ବଧ ନିମନ୍ତେ ଦେବଗଣ ତାଙ୍କୁ ସୃଜନ କଲେ ।

ଇନ୍ଦ୍ରଙ୍କ ପତ୍ନୀଙ୍କୁ ଇନ୍ଦ୍ରାଣୀ ବୋଲି କୁହାଯାଇଥିବା ସ୍ଥଳେ ଅନ୍ୟତ୍ର ଶଚୀ ଦେବୀ ବୋଲି କୁହାଯାଇଛି ।

ଇନ୍ଦ୍ରଙ୍କୁ ସହସ୍ରାକ୍ଷ ବୋଲି ବର୍ଣ୍ଣନା କରାଯାଇଛି । ସେଥିରୁ କେହି କେହି ପଣ୍ଡିତ ମନେ କରନ୍ତି କି ଆକାଶକୁହିଁ ଇନ୍ଦ୍ର ବୋଲି କୁହାଯାଇଛି । ଆକାଶର ନକ୍ଷତ୍ରରାଶିକୁ ଇନ୍ଦ୍ରର ସହସ୍ର ନୟନ ରୂପେ ଗ୍ରହଣ କରାଯାଇଛି ।

ସେ ଯାହା ହେଉ, ଇନ୍ଦ୍ର ଯେ କେବଳ ଆକାଶର ନାମାନ୍ତର ନୁହନ୍ତି, ଜଣେ ପ୍ରତ୍ୟକ୍ଷ

ଦେବତା ରୂପେ ସେ ପରିଗଣିତ ହେଉଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଅନ୍ତରୀକ୍ଷର ମୁଖ୍ୟ ଦେବତା ଏବଂ ଝଡ଼ ତଥା ବଜ୍ରର ନିୟନ୍ତା ।

ଇନ୍ଦ୍ରଙ୍କ ରଥ ତଥା ଅଶ୍ୱର ନିର୍ମାତା ହେଲେ ଋଭୁଗଣ । ଇନ୍ଦ୍ର ସୋମରସ ପାନ କରି ମରୁତ୍-ଗଣଙ୍କ ସହାୟତାରେ ଅହିବୃତ୍ରଙ୍କୁ ଆକ୍ରମଣ କରିଥିଲେ । ଅହିବୃତ୍ରର ଉପଦ୍ରବରେ ଜଳ ଅବରୁଦ୍ଧ ହୋଇଥିଲା । ବଜ୍ରାଘାତରେ ପର୍ବତ ବିଦୀର୍ଣ୍ଣ କରି ଇନ୍ଦ୍ର ଅବରୁଦ୍ଧ ଜଳସ୍ରୋତ ବାହାର କରି ଆଣିପାରିଥିଲେ । ପର୍ବତ ଓ ମେଘରାଶି ଭିତରେ ଲୁକ୍କାୟିତ ଦାନବଗଣଙ୍କୁ ମଧ୍ୟ ଇନ୍ଦ୍ର ସଂହାର କରିଥିଲେ ଓ ଜଳରାଶିକୁ ମୁକ୍ତ ଦେଇ-ଥିଲେ ।

କାଳକ୍ରମେ ଇନ୍ଦ୍ରଙ୍କୁ ଅନ୍ୟାନ୍ୟ ଅନେକ ପ୍ରକାରରେ ଚିତ୍ରଣ କରାଗଲା । ତାଙ୍କୁ ଅବଲମ୍ବନ କରି ପୁରାଣକାରମାନେ ଭିନ୍ନ ଭିନ୍ନ ସତ୍ୟ ବୁଝାଇବାକୁ ଚେଷ୍ଟା କଲେ । ତେବେ କ୍ରମଶଃ ଇନ୍ଦ୍ରପୂଜାର ପ୍ରଚଳନ ମନ୍ଦୀଭୂତ ହୋଇଗଲା । କୃଷ୍ଣ ଅବତାରଙ୍କ ସମୟରେ ଥରେ ଇନ୍ଦ୍ର ମନ୍ଦର ପର୍ବତ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଲୋକମାନଙ୍କ ଉପରେ କ୍ରୁଦ୍ଧ ହୋଇ ପ୍ରବଳ ବର୍ଷାଦ୍ୱାରା ସେମାନଙ୍କୁ ଭସାଇ ନେବାକୁ ବସିଥିଲେ । କୃଷ୍ଣ ମନ୍ଦର ପର୍ବତ ତୋଳି ତାହା ତଳେ ଲୋକଙ୍କୁ ଆଶ୍ରା ଦେଲେ । ଇନ୍ଦ୍ର ଯେତେବେଳେ ଦେଖିଲେ ସେ କାହାରି କିଛି କ୍ଷତି କରିପାରୁ ନାହାନ୍ତି, ସେତେବେଳେ କୃଷ୍ଣଙ୍କ ପାଖରେ କ୍ଷମା ପ୍ରାର୍ଥନା କଲେ । ଏ କିମ୍ବଦନ୍ତୀ ଇନ୍ଦ୍ରଙ୍କ ପ୍ରତିପତ୍ତି ହ୍ରାସ ହେବା ସୂଚିତ କରୁଛି । ଏହା ପୁରାଣ ଯୁଗର କାହାଣୀ । କୃଷ୍ଣ ସ୍ୱୟଂ ବିଷ୍ଣୁଙ୍କର ଅବତାର ଥିଲେ । ମାନବ ଚେତନା ମଟିମଟିକା ଦେବଦେବୀଙ୍କୁ ଛାଡ଼ି ପରମେଶ୍ୱରଙ୍କ ପ୍ରତି ଧ୍ୟାନ-ଦେବାକୁ ପ୍ରବୃତ୍ତ ହେଲେ, ହୁଏତ ଏ ଘଟଣାର ତାହାହିଁ ତାତ୍ପର୍ଯ୍ୟ ।



# ପ୍ରାଚୀନ ଭାରତର ବିସ୍ମୟ ଏବଂ ଗୌରବ

—'ଜହ୍ନମାମୁଁ'ର
ପୃଷ୍ଠାରେ ଉନ୍ମୋଚିତ ହୋଇ
ଚାଲିଥାଏ ମାସ ପରେ ମାସ



ଭାରତର ସର୍ବାଧିକ ଜନପ୍ରିୟ
ଶିଶୁ-କିଶୋର ପତ୍ରିକା





# ROUTINE

| DAYS | 1st period | 2nd period | 3rd period | 4th period | 5th period | 6th period | 7th period |
|---|---|---|---|---|---|---|---|
| Monday | | | | | | | |
| Tuesday | | | | | | | |
| Wednesday | | | | | | | |
| Thursday | | | | | | | |
| Friday | | | | | | | |
| Saturday | | | | | | | |
| Sunday | | | | | | | |

**CHANDAMAMA** A monthly magazine for children
where the old become younger and the young grow older.

# ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଧାରାବାହିକ ବାର୍ତ୍ତାବହ

**ଜହ୍ନମାମୁଁ** ର ପୃଷ୍ଠାରେ ପ୍ରତିଫଳିତ ହୁଏ ଭାରତର ମହାକାବ୍ୟ, କିମ୍ବଦନ୍ତୀ ତଥା ଆଧୁନିକ ଭାରତୀୟ ଜୀବନଯାତ୍ରାର ଝଲକ ।

ବିଂଶ ଶତାବ୍ଦୀର ଭାରତୀୟ ସମାଜ ଭିତରେ ବି ଓତ-ପ୍ରୋତ ଭାବେ ଜଡ଼ିତ ଏହି ମହାକାବ୍ୟର ଅତୀତର ଅମର ପ୍ରଭାବ । ତାକୁ ଏଡ଼ାଇବା ଅସମ୍ଭବ ।



ସେ ପରମ୍ପରାର ସରସ ସୁନ୍ଦର ବର୍ଣ୍ଣନା ଦ୍ୱାରା ଆମର ନୀତିକଥା ଓ ବୀରଗାଥା ସହ ଶିଶୁମାନଙ୍କର ଅନ୍ତରଙ୍ଗ ପରିଚୟ କରାଇଦେବାହିଁ ଶ୍ରେୟସ୍କର ଓ ଶୁଭଙ୍କର ।

**ଜହ୍ନମାମୁଁ** ତାହାହିଁ କରିଆସୁଛି । ଆଜି ଏହାର ଗଠନମୂଳକ ଭୂମିକା ସର୍ବଜନସ୍ୱୀକୃତ । ଏହି ଭୂମିକାର ମହତ୍ତ୍ୱ ଅପରସୀମ । କେବଳ ଶିଶୁସମାଜର ନୁହେଁ, **ଜହ୍ନମାମୁଁ** ଆବାଳବୃଦ୍ଧବନିତାଙ୍କ ଶିକ୍ଷା ଓ ପ୍ରମୋଦର ସାଥୀ ।

ଇଂରାଜୀ ସମେତ ବର୍ତ୍ତମାନ ତେରଗୋଟି ଭାଷାରେ ପ୍ରକାଶିତ **ଜହ୍ନମାମୁଁ** ପତ୍ରିକା-ସାହିତ୍ୟରେ ଅଭି-ନବ ଅଭିଯାନ । ଏହାର ଦ୍ୱିତୀୟ ଉଦାହରଣ ନାହିଁ । ଓଡ଼ିଆ ଭାଷାରେ ମଧ୍ୟ ଏହାର ଜନପ୍ରିୟତା ଅବିସମ୍ବାଦିତ ।



## ୧୨,୦୦୦,୦୦୦ ଶିଶୁ 'ଜହ୍ନମାମୁଁ'ର ଜନପ୍ରିୟତାର ସାକ୍ଷ୍ୟ ଦିଅନ୍ତି ।

ଜହ୍ନମାମୁଁ (ସବୁ ସଂସ୍କରଣର) ପ୍ରସାର ଭାରତ ଓ ବିଦେଶରେ ବର୍ତ୍ତମାନ ପ୍ରାୟ ୮୦୦, ୦୦୦ । ବ୍ୟକ୍ତିଗତ ଗ୍ରାହକ ସମେତ ପାଠାଗାର, ଶିକ୍ଷାନୁଷ୍ଠାନ ଇତ୍ୟାଦି ଏହି ତାଲିକାର ଅନ୍ତର୍ଭୁକ୍ତ । ସମୀକ୍ଷାରୁ ଜଣାଯାଏ, ଖଣ୍ଡିଏ କପି ହାରାହାରି ପନ୍ଦରଜଣ ପଢ଼ିଥାନ୍ତି ।



ଭାରତ-କାହାଣୀ

## ସିକନ୍ଦର ଓ ପୁରୁ

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମାସି-ଡୋନିଆର ତରୁଣ ରାଜା ସିକନ୍ଦର (ଆଲେକ୍‌ଜାଣ୍ଡାର) ବିଶ୍ୱବିଜୟ ଲକ୍ଷ୍ୟରେ ବହିର୍ଭୂତ ହେଲେ । ସେ ହିନ୍ଦୁକୁଶ ପର୍ବତ ଅତିକ୍ରମ କରି ନିଜର ପ୍ରବଳ ସେନାବାହିନୀ ସହ ସିନ୍ଧୁପ୍ରଦେଶ ଓ ପଞ୍ଜାବ ଆକ୍ରମଣ କଲେ ।

ସେତେବେଳେ ଝେଲମ ଏବଂ ଚେନାବ ନଦୀ ମଧ୍ୟବର୍ତ୍ତୀ ଭୂଖଣ୍ଡରେ ରାଜୁତି କରୁଥିଲେ ପୁରୁ । ତକ୍ଷଶୀଳାର ରାଜା ଅମ୍ଭିଙ୍କ ସହ ପୁରୁଙ୍କର ଶତ୍ରୁତା ଲାଗି ରହିଥିଲା । ସିକନ୍ଦର ସହ ଅମ୍ଭି ସହଯୋଗ କଲେ ।





ଅମ୍ଭିଙ୍କ ସହାୟତାରେ ସିକନ୍ଦର ତାଙ୍କ ରାଜ୍ୟ ଆକ୍ରମଣ କରିବାକୁ ଆସୁଥିବାର ସମ୍ବାଦ ଯଥାସମୟରେ ପାଇଲେ ରାଜା ପୁରୁ । ସେ ନିଜ ସୈନ୍ୟବାହିନୀକୁ ଧରି ଆକ୍ରମଣର ମୁକାବିଲା ନିମନ୍ତେ ପ୍ରସ୍ତୁତ ହେଲେ ।



ବିତସ୍ତା ନଦୀର ଏପଟେ ପୁରୁଙ୍କ ସୈନ୍ୟ-
ବାହିନୀ ଛାଉଣୀ ପକାଇଲେ । ପୁରୁଙ୍କ
ସୈନ୍ୟଦଳର ପୁରୋଭାଗରେ ରହିଥା'ନ୍ତି
ଗଜାରୋହିବାହିନୀ । ହାତୀକୁ ସାମନା
କରିବାରେ ବିଦେଶୀମାନେ ଅଭ୍ୟସ୍ତ ନ
ଥିଲେ ।

କିନ୍ତୁ ସିକନ୍ଦର ଏକ ଉପାୟ ପାଞ୍ଚିଲେ ।
ସେ ନିଜ ବାହିନୀକୁ କେତେ ମାଇଲ
ପଛକୁ ହଟାଇନେଇ ଏକ ଦୂରବର୍ତ୍ତୀ
ସ୍ଥାନରେ ନଦୀ ପାରକରାଇ ପୁରୁଙ୍କ
ବାହିନୀକୁ ହଠାତ୍ ପଶ୍ଚାଦ୍ଦେଶରୁ ଆକ୍ରମଣ
କଲେ ।





ରାଜା ପୁରୁ ଗଜାରୋହିବାହିନୀ ଉପରେ
ବହୁତ ନିର୍ଭର କରୁଥିଲେ । ଗଜମାନଙ୍କୁ
ଏଡ଼ାଇ ଏମିତି ଭାବରେ ଶତ୍ରୁପକ୍ଷ ଆ-
କ୍ରମଣ କରିପାରେ—ଏ କଳ୍ପନା ତାଙ୍କ
ମୁଣ୍ଡକୁ ଆସି ନ ଥିଲା । ତଥାପି ସେ
ବୀର ଭାବରେ ଲଢ଼ିଲେ ।

ଗଜାରୋହୀଙ୍କ ସହ କିପରି ଭାବରେ ଲଢ଼ିବାକୁ ହୁଏ, ଅମ୍ଭି ସେ କଥା ସିକନ୍ଦରଙ୍କୁ କହୁଦେଉଥାନ୍ତି । ତାହା ସିକନ୍ଦରଙ୍କୁ ବହୁତ ସାହାଯ୍ୟ କଲା । କିନ୍ତୁ ପୁରୁଙ୍କ ବୀରତ୍ୱ ଓ ସାହସ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ ।





ଆକ୍ରମଣକାରୀଙ୍କ ବାହିନୀ ସଂଖ୍ୟା ଓ ଅଭିଜ୍ଞତା ଦୃଷ୍ଟିରୁ ପୁରୁଙ୍କ ବାହିନୀ ତୁଳନାରେ ବହୁତ ଅଧିକ ଭାଗ୍ୟବାନ୍ ଥିଲେ କହିବାକୁ ହେବ । ପ୍ରଚଣ୍ଡ ଯୁଦ୍ଧରେ ପୁରୁଙ୍କ ଅଧିକାଂଶ ସୈନିକ ମଲେ ବା ପଳାଇଲେ । ମୁଷ୍ଟିମେୟ ବିଶ୍ୱସ୍ତ ସୈନିକମାନଙ୍କୁ ଧରି ବୀର ପରାକ୍ରମରେ ଯୁଦ୍ଧ କରିଚାଲିଲେ ପୁରୁ ।

ହିତୈଷୀମାନେ ପୁରୁଙ୍କୁ ଯୁଦ୍ଧକ୍ଷେତ୍ରରୁ ଶୀଘ୍ର ଅପସରିଯାଇ ଆତ୍ମରକ୍ଷା କରିବାର ପରାମର୍ଶ ଦେଲେ । କିନ୍ତୁ ପୁରୁ ତାହା ଶୁଣିଲେ ନାହିଁ । ଜଣକ ପରେ ଜଣେ ଦେହରକ୍ଷୀ ଟଳିପଡ଼ୁଥାନ୍ତି । ତଥାପି ପୁରୁ ଅକ୍ଳାନ୍ତ ଭାବରେ ଯୁଦ୍ଧ କରୁଥାନ୍ତି । ଦୂରରୁ ସିକନ୍ଦର ତାହା ଦେଖୁଥାନ୍ତି ।





ଅବଶେଷରେ ସିକନ୍ଦରଙ୍କର କେତେଜଣ ଦୁର୍ଦ୍ଧର୍ଷ ସୈନିକ ପୁରୁଙ୍କୁ ଘେରିଗଲେ । ସେତେବେଳକୁ ପୁରୁଙ୍କ ଦେହରେ ନଅଟି କ୍ଷତ । ତଥାପି ବନ୍ଦୀ ହେବା ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ପ୍ରତିରୋଧ କରୁଥାନ୍ତି । ତାଙ୍କୁ ବନ୍ଦୀ କରୁଥିବା ସୈନିକଙ୍କ ଭିତରୁ ସେ ଜଣକୁ ମାରିଦେଲେ ।

ଯେତେବେଳେ ବନ୍ଦୀ ପୁରୁଙ୍କୁ ନେଇ ସିକନ୍ଦରଙ୍କ ଆଗରେ ଉପସ୍ଥିତ କରାଗଲା, ସେତେବେଳେ ସିକନ୍ଦର ତାଙ୍କୁ ସପ୍ରଶଂସ ଆଖିରେ ଅନାଇ ପଚାରିଲେ, "ମୋଠୁ କି ପ୍ରକାର ବ୍ୟବହାର ଆଶା କର ?" ପୁରୁ ଉତ୍ତର ଦେଲେ, "ଜଣେ ରାଜାଠୁ ଆଉ ଜଣେ ରାଜାର ଯେପରି ବ୍ୟବହାର ପ୍ରାପ୍ୟ ।"





ସେଯାଏ ସିକନ୍ଦର ସେଭଳି ସାହସୀ ଓ ସ୍ପଷ୍ଟବାଦୀ ରାଜାଙ୍କୁ ଭେଟି ନ ଥିଲେ । ସେ ଅଭିଭୂତ ହୋଇ ପୁରୁଙ୍କୁ ମୁକ୍ତ କଲେ ଓ ତାଙ୍କ ସହ ମିତ୍ରତା ପାଶରେ ଆବଦ୍ଧ ହେଲେ । ପୂର୍ବ ପରି ପୁରୁ ସ୍ୱାଧୀନ ରାଜା ଭାବରେ ରାଜୁତି କଲେ ।



# ସୁନାଗହଣା

ରମାବାଈ ଥିଲେ ଧନୀ ଘରର ବୋହୂ । ତା'ର ପୁଅଟିଏ ହେବା ପରେ ସ୍ୱାମୀ ମରିଗଲେ । ମା' ପୁଅଙ୍କ ବ୍ୟକ୍ତିଗତ ସଂସାରରେ ଆଉ କେହି ନାହିଁ ! ପୁଅର ନାମ ରାମଭଦ୍ର । ମା' ପୁଅଙ୍କ ସ୍ୱଭାବ ଥିଲା ସମ୍ପୂର୍ଣ୍ଣ ବିପରୀତ । ପୁଅ ରାମଭଦ୍ର ଥିଲା ସ୍ୱଭାବ ଓ ବ୍ୟବହାରରେ ଅତ୍ୟନ୍ତ ଶାନ୍ତ ସୁଶୀଳ । ତେଣୁ ଗାଁ ଲୋକମାନେ ତାକୁ ଖୁବ୍ ଭଲ ପାଉଥିଲେ । ରାମଭଦ୍ରର ବିବାହ ବୟସ ହେବା ମାତ୍ରେ ଗ୍ରାମର ଅନେକ ଲୋକ ସେମାନଙ୍କ ଝିଅଙ୍କ ପାଇଁ ପ୍ରସ୍ତାବ ପଠାଇଲେ । ହେଲେ ରମାବାଈ ସମସ୍ତଙ୍କୁ ଗୋଟିଏ କଥା କୁହେ । ତାହା ହେଉଛି ପଚିଶ ହଜାର ଟଙ୍କା ଯୌତୁକ । ଗାଁ ଲୋକମାନଙ୍କ ଭିତରୁ ଏତେ ଟଙ୍କା କେହି ଦେଲା ଭଳି ନ ଥିଲେ । ତେଣୁ ସେମାନେ ନିଜ ପ୍ରସ୍ତାବଟିମାନ ଫେରାଇ ନେଉଥିଲେ ଓ ଅନ୍ୟ ଗ୍ରାମରୁ ପ୍ରସ୍ତାବ ଆସିଲେ ତାକୁ ମଧ୍ୟ ଭାଙ୍ଗିଦେବାକୁ ଯତ୍ନ କରୁଥିଲେ ।

ଦିନେ ରମାବାଈ ପୁଅକୁ କହିଲା, "ପୁଅ, କାହିଁ ଗୋଟିଏ ବି ପ୍ରସ୍ତାବ ଆଜିକାଲି ଆସୁନାହିଁ ? ଗାଁବାଲା ଗୋଳମାଳ କଲେ କି ?"

"ବହୁତ ଯୌତୁକ ଦାବି ତୁ କରିବାରୁ ସେମାନେ ଆମର ଶତ୍ରୁ ହୋଇଯାଇଛନ୍ତି । କ'ଣ କରିବା । ଆଉ ସେମାନେ ସମସ୍ତେ ଏକାଠି ହେଲେ ଆମର ଅବସ୍ଥା କ'ଣ ହେବ ?" ରାମଭଦ୍ର କହିଲା ।

ରମାବାଈ ଭାବି ଭାବି କହିଲା, "ଆଚ୍ଛା ଏଥର ଯେଉଁ ପ୍ରସ୍ତାବ ଆସିବ ସେଥିପାଇଁ ମୁଁ ପଇସାଟିଏ ଦାବି କରିବି ନାହିଁ ।" ଏକଥା ଶୁଣି ରାମଭଦ୍ର ଟିକିଏ ଖୁସି ହେଲା ।

ପାଖ ଗ୍ରାମରେ ଶିବନାଥ ନାମକ ବ୍ୟକ୍ତିଙ୍କର

ରାଜକୁମାର



ଛଅଟି ଝିଅ ଥାନ୍ତି । ସବୁଠୁ ସାନ ଜାନକୀ ଥିଲା ଦେଖିବାକୁ ଖୁବ୍ ସୁନ୍ଦର । କିନ୍ତୁ ବଡ଼ ପାଞ୍ଚ ଜଣଙ୍କୁ ବିବାହ ଦେବା ପରେ ଶିବନାଥଙ୍କ ହାତରେ କିଛି ଟଙ୍କାପଇସା ନ ଥାଏ । ଏପରି ସମୟରେ ରମାବାଈ କଥା ତାଙ୍କ କାନରେ ପଡ଼ିଲା । ରାମଭଦ୍ର ଓ ରମାବାଈଙ୍କୁ ସେ କନ୍ୟା ଦେଖିବାକୁ ନିମନ୍ତ୍ରଣ କଲେ । ରାମଭଦ୍ର ଜାନକୀକୁ ଖୁବ୍ ପସନ୍ଦ କଲା । ରମାବାଈ କନ୍ୟା ଦେଖି ଖୁସୀ ହୋଇ କହିଲା, "ଆମେ ତ ଆଦୌ ଯୌତୁକ ଦାବି କରୁନାହୁଁ ! କେବଳ କନ୍ୟାକୁ ପଚାଶଭରି ସୁନା ଦେଇଦେବ !" ପ୍ରଥମେ ଶିବନାଥ ଖୁସୀ ହୋଇଥିଲା, କିନ୍ତୁ ବୁଢ଼ୀର ଏପରି କଥା ଶୁଣି ମନ ଖରାପ ହୋଇଗଲା ।

"ଦେଖନ୍ତୁ ଭଉଣୀ ମୁଁ ତ ଗରିବଲୋକ; ଏତେ କେଉଁଠୁ ଆଣିବି ?" ଶିବନାଥ କହିଲା ।

"ଆରେ ମୁଁ କ'ଣ କହୁଛି ସୁନା ନେଇ ମୋତେ ଦେଇଆସ ? ତୁମ ନିଜ ଝିଅର ମୁହଁ ସୁନ୍ଦର ଦିଶିବ ବହୁତ ଅଳଙ୍କାର ଦେଲେ !" ଏକଥା କହି ପୁଅକୁ ନେଇ ଚାଲିଆସିଲା ।

ରାମଭଦ୍ର ମନେ ମନେ ଭାବିଲା ତା'ର ମା' ପାଇଁ ହିଁ ଜାନକୀର ଆଶା ଛାଡ଼ିବାକୁ ପଡ଼ିବ ।

ରମାବାଈର କଥା ଶୁଣି ଜାନକୀର ଭଉଣୀମାନେ କହିଲେ କି ସେମାନେ ନିଜ ନିଜର ଗହଣା ଦେଇ ଜାନକୀର ବିବାହ ଦେଇଦେବେ । ପରେ ପୁଣି ସେସବୁ ଫେରସ୍ତ ନେଇନେବେ । ବାହାଘରଟା ସରିଯାଉ । ତା'ପରେ ଶିବନାଥ ଖବର ପଠାଇଲେ, "ଆପଣଙ୍କ ଦାବି ପାଇଁ ଆମେ ପ୍ରସ୍ତୁତ । ରମାବାଈ ଏ କଥା ଶୁଣି ମହା ଖୁସୀ । ଏକ ସଙ୍ଗରେ ରୂପବତୀ ବୋହୂ ଓ ଏତେ ଅଳଙ୍କାର ।

ବିବାହ ତ ହୋଇଗଲା । ଜାନକୀ କିନ୍ତୁ ଏ ଗହଣାର ରହସ୍ୟ ନିଜ ସ୍ୱାମୀକୁ ବି କହିବାକୁ ସାହସ କଲାନାହିଁ । ଏଣେ ଅନ୍ୟ ଭଉଣୀମାନେ ନିଜ ନିଜର ଗହଣା ନ ନେଇ କିପରି ଶ୍ୱଶୁର ଘରକୁ ଫେରିବେ ? ତେଣୁ ସେମାନେ ବାପଘରେ ଅପେକ୍ଷା କରିଥା'ନ୍ତି ଜାନକୀ କେବେ

ଫେରିବ । କିନ୍ତୁ ରମାବାଈ ଜାନକୀକୁ ବାପଘର ପଠାଇବାକୁ ବିଲ୍‌କୁଲ୍ ନାରାଜ । ଇତିମଧ୍ୟରେ ଜାନକୀ ଗର୍ଭବତୀ ହେଲା । ତେଣୁ ରମାବାଈ ସମୁଧି ଘରକୁ ଖବର ପଠାଇଲା କି ବୋହୂର ପିଲା ହେବାପାଇଁ ବୋହୂ ବାପଘର ଯିବ ।



ପିଲା ହେବାର ସମୟ କ୍ରମେ ନିକଟତର ହେଲା । ରମାବାଈ କହିଲା, "ଦେଖ ଏବେ ସମୟ ଭଲ ନୁହେଁ । ତୋ ଗହଣାସବୁ ମୁଁ ଟ୍ରେଜେରୀରେ ରଖିଦେଉଛି । କାରଣ ରାସ୍ତାରେ ଚୋରି ହୋଇପାରେ ।" ଏ କଥା ଶୁଣି ଜାନକୀର ମୁହଁ ଶୁଖିଗଲା । ଜାନକୀ ବିନାଗହଣାରେ ବାପ-ଘରକୁ ଫେରିଗଲା । ଗହଣା ନ ଆଣି ଆସି-ଥିବାର ଦେଖି ତା'ର ବଡ଼ଭଉଣୀମାନେ ମହା ସଙ୍କଟରେ ପଡ଼ିଲେ । ଏବେ ସେମାନେ ବିନା ଗହଣାରେ ଫେରିବେ ତ ସେମାନଙ୍କ ଶାଶୁଘର ଲୋକେ କ'ଣ କହିବେ ?

ତା'ପରେ ଶିବନାଥ ଜ୍ୱାଇଁକୁ ଡାକିନେଇ ଏକାନ୍ତରେ ସବୁ କଥା କହିଲେ, ଜାନକୀ ମଧ୍ୟ କହିଲା, "ତୁମେ ଯେପରି ହେଉ ଗହଣା ଆଣି-ଦିଅ ନ ହେଲେ ମୋ ଭଉଣୀମାନଙ୍କର ସଂସାର ବୁଡ଼ିଲା ।"

ଏସବୁ ଶୁଣି ରାମଭଦ୍ର ଆଶ୍ଚର୍ଯ୍ୟ ହେଲା । ଅସଲ କଥାଟି ଜଣାପଡ଼ିଗଲେ ରମାବାଈ ଆଉ ଜାନକୀକୁ ଘରେ ପୂରାଇବ ନାହିଁ । କିନ୍ତୁ ସମୟ ଧରି ସେ ବହୁତ ଭାବିବା ପରେ କହିଲା, "ଗହଣା ଆଣି ତୁମ ଜିମା ଦେବାର ଦାୟିତ୍ୱ ମୋର । ତୁମେ ନିଶ୍ଚିନ୍ତ ରୁହ ।" ରାମଭଦ୍ର ତା'ପରେ ଗାଁକୁ ଫେରିଗଲା ।

ଦିନେ ସେ ତା' ମା'ଙ୍କୁ କହିଲା, "ମା' ମୁଁ ଜାନକୀ ନାମରେ ଗୋଟିଏ ଖରାପ ସ୍ୱପ୍ନ ଦେଖିଛି । ତା'ର ପିଲା ହେବାର ଅଛି । ଥରେ ଯାଇ ତାକୁ ଦେଖି ଆସେ ।" ଏ କଥା କହି ସେ ଘରୁ ବାହାରି ଚାଲିଗଲା ।

ସେଦିନ ସନ୍ଧ୍ୟା ହେବା ମାତ୍ରେ କବାଟ ବନ୍ଦ କରି ରମାବାଈ ଶୋଇଗଲା । ଅଧରାତି ବେଳକୁ କେହି କବାଟ ଠକ୍ ଠକ୍ କରିବା ପରି ଲାଗିଲା ।

ରମାବାଈ ଭାବିଲା ପୁଅ ଫେରିଆସିଛି । ସେ ଯାଇ କବାଟ ଖୋଲିଲା । ତା'ପରେ ମୁଖା ପିନ୍ଧିଥିବା ଜଣେ ଲୋକ ଭିତରକୁ ପଶିଆସି କବାଟ ବନ୍ଦ କଲା ଓ କହିଲା, "ପାଟି କରିବୁ ତ ଛୁରୀ ମାରିଦେବି । ଚୁପ୍‌ଚାପ୍ ଟ୍ରେଜେରିର ଚାବି ଦେଇଦେ ।"

ରମାବାଈ ଡରିହରି ଚାବି ଦେଇଦେଲା । ଚୋର ରମାବାଈର ହାତ ଗୋଡ଼ ଓ ମୁହଁ ବାନ୍ଧିଦେଲା । ଟ୍ରେଜେରି ଖୋଲି ସବୁ ଗହଣା ନେଇ ଚାଲିଗଲା ।

କିଛି ସମୟ ପରେ ଘରେ ପଶୁ ପଶୁ ରାମଭଦ୍ର କହିଲା, "କ'ଣ ମା' ତୁ କବାଟ ବନ୍ଦ କରି ନ ଥିଲୁ ?" ପୁଣି ମା'ର ବନ୍ଧାହୋଇଥିବା ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ତୁରନ୍ତ ଯାଇ ସେ ମା'ର ବନ୍ଧନ ଖୋଲିଦେଲା ।

"ଆଜିକାଲି ସମୟ ଭଲ ନୁହେଁ ମା' । କଣ୍ଠସ୍ୱର ନ ଚିହ୍ନି କେହି କବାଟ ଖୋଲେ ?" ଏ କଥା କହି ରାମଭଦ୍ର ଟ୍ରେଜେରି ଯାଇ ଦେଖିଲା ଓ କହିଲା, "ମା' ଭଲ ହୋଇଛି, ତୋର ସବୁ ଗହଣା ରହିଛି, ଖାଲି ଜାନକୀର ଗହଣା ଚୋର ନେଇଛି । ଜାନକୀ ତା' ଗହଣା ପିନ୍ଧି ଯାଇଥିଲେ ଭଲ ହୋଇଥା'ନ୍ତା । ବର୍ତ୍ତମାନ କେବଳ ଜାନକୀର ଗହଣା ଚୋରି ହୋଇଛି କହିଲେ କେହି ବିଶ୍ୱାସ କରିବେ ନାହିଁ !" ରାମଭଦ୍ର ଚିନ୍ତା କରିବାର ଅଭିନୟ କରି କହିଲା ।

"ଆରେ ପୁଅ ଆମେ କ'ଣ କାଙ୍ଗାଳ ? ଦେଖିବୁ ରହ ଦୁଇଦିନ ଭିତରେ ମୁଁ ଜାନକୀର ସବୁ ଗହଣା ଗଢ଼ାଇ ଯେମିତି ଥିଲା ସେମିତି ରଖିଦେବି । ଚୋରି ଘଟଣା କଥା କେହି ଜାଣିବେ ବି ନାହିଁ ।" ରମାବାଈ କହିଲା ।

ଜାନକୀର ପୁଅଟିଏ ହେଲା । ଶିଶୁର ନାମକରଣ ଦିନ ରମାବାଈ ନୂଆ ଗଢ଼ା ହୋଇଥିବା ଗହଣାସବୁ ନେଇ ବୋହୂକୁ ପିନ୍ଧାଇଦେଇ ଆସିଲା । ସମସ୍ତେ ମହା ଖୁସୀ ।



# ଗୁରୁବାର

କୃଷ୍ଣସିଂହ ପାଠଶାଠ ପଢ଼ିଥିବା ଲୋକ । ଧନୀ ମଧ୍ୟ କମ୍ ନୁହେଁ । କିନ୍ତୁ ତା'ର ଏହି ଅନ୍ଧବିଶ୍ୱାସ ଥିଲା ଯେ ଗୁରୁବାର ଦିନ ପଇସା ଖର୍ଚ୍ଚ କଲେ ଘରୁ ଲକ୍ଷ୍ମୀ ଚାଲିଯିବେ ।

ଥରେ ସେ ହଠାତ୍ ବେମାର ପଡ଼ିଲା । ବୈଦ୍ୟ ରାମଶାସ୍ତ୍ରୀ ତାଙ୍କୁ ଦେଖି କହିଲେ, "ଆପଣ କେଇ ଘଣ୍ଟା ଭିତରେ ଭଲ ହୋଇଯିବେ । କିନ୍ତୁ ସେ ପାଇଁ ବର୍ତ୍ତମାନ ସହରରୁ ଗୋଟାଏ ମୂଲ୍ୟବାନ୍ ଔଷଧ କିଣିବାକୁ ହେବ । ସେତକ ନହେଲେ ରୋଗ ବଢ଼ି ବିପଦ କରିବ ।"

"ଶାସ୍ତ୍ରୀ ! ଆଜି ଗୁରୁବାର । ଲକ୍ଷ୍ମୀଙ୍କ ଦିନ । ଖର୍ଚ୍ଚ କରିବି କିପରି ?" କୃଷ୍ଣସିଂହ କହିଲା ।

"ଗୁରୁବାରରେ ବେମାର ପଡ଼ିଲେ କାହିଁକି ?" ବିରକ୍ତ ହୋଇ ବୈଦ୍ୟ ପଚାରିଲେ ଓ କହିଲେ, "ଦେଖନ୍ତୁ, ମା' ଲକ୍ଷ୍ମୀ ଆପଣଙ୍କ ଭଲ ପାଇଁ ଆପଣଙ୍କୁ ଟଙ୍କା ଦେଇଛନ୍ତି; ରୋଗ ବଢ଼ାଇବା ପାଇଁ ନୁହେଁ । ତାଙ୍କ ନାମରେ ପଇସା ଖର୍ଚ୍ଚ ନ କରି ରୋଗ ବଢ଼ାଇବା ତାଙ୍କ ପ୍ରତି ଅପମାନ । ହଉ, ମୋ ପ୍ରାପ୍ୟ ଦେଇଦିଅନ୍ତୁ ।"

କୃଷ୍ଣସିଂହ ଦେଖିଲେ, ଯେତେବେଳେ ବୈଦ୍ୟଙ୍କୁ ଦେବାକୁ ହେବ, ଔଷଧ ପାଇଁ ଖର୍ଚ୍ଚ ନ କରିବେ କିଆଁ ? ସେ ଔଷଧ କିଣିଲେ ଓ ଭଲ ହୋଇଗଲେ ।





# ପ୍ରେତାତ୍ମାର ପ୍ରଭାବ

ଗଙ୍ଗାଧର ବହୁତ ଦୂର ଗାଁରେ ବାହା ହୋଇଥିଲା । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଆଜି ଭଳି ରେଳ ମୋଟର ନ ଥିଲା । ଧନୀଲୋକେ ସବାରି ଚଢ଼ି ଦୂର ସ୍ଥାନମାନଙ୍କୁ ଯିବା ଆସିବା କରୁଥିଲେ । ଅନ୍ୟମାନେ ଚାଲୁଥିଲେ ।

ଗଙ୍ଗାଧର ସ୍ତ୍ରୀ ସୁଲୋଚନା ତା' ବାପାମା'ଙ୍କର ଗୋଟିଏ ବୋଲି ସନ୍ତାନ । ସେ ପିଲାବେଳୁ ଅଳସୁଆ ହୋଇ ବଢ଼ିଥାଏ । ସକାଳେ ଅଳ୍ପ କିଛି ଖାଇ ଗଙ୍ଗାଧର କାମକୁ ବାହାରିଯାଏ । ସେ ଦିନ ଦୁଇପହରବେଳକୁ ଘରକୁ ଫେରିବାବେଳକୁ ସୁଲୋଚନା ରୋଷେଇ କରି ନିଜେ ଖାଇପିଇଦେଇ ସ୍ୱାମୀ ପାଇଁ ବାଢ଼ିରଖି ଶୋଇପଡ଼ିଥାଏ । ଗଙ୍ଗାଧର ଟିକିଏ ବିଶ୍ରାମ ନେଇ ପୁଣି କାମକୁ ବାହାରିଯାଏ । ତା'ର ଆସିବା ବେଳକୁ ସୁଲୋଚନା ନିଜେ ଖାଇ ତା' ପାଇଁ ବାଢ଼ିରଖି ପାଖପଡ଼ୋଶୀଙ୍କ ଘରକୁ ଗପସପ କରିବା ସକାଶେ ବାହାରିଯାଇଥାଏ ।

ଗଙ୍ଗାଧର ସୁଲୋଚନାକୁ କିଛି କହେ ନାହିଁ । ତା'ର ବାପାମା' ଭାଇଭଉଣୀ କେହି ନ ଥାନ୍ତି । ସେ ଶାନ୍ତିପ୍ରିୟ ଲୋକ । କଳିକରିବା ଅପେକ୍ଷା ଏମିତି ଚଳିବା ଭଲ ବୋଲି ସେ ଭାବୁଥାଏ ।

ଦିନେ ସୁଲୋଚନାର ବାପଘରୁ ସମ୍ବାଦ ଆସିଲା କି ତାଙ୍କ ଘରେ ଉତ୍ସବ ହେଉଛି । ସେମାନେ ସୁଲୋଚନାକୁ ଡାକୁଛନ୍ତି । ସୁଲୋଚନା ଖୁସୀ ହୋଇ ବାହାରିଲା । ଗଙ୍ଗାଧର ତା' ସାଥିରେ ଯାଇ ତାକୁ ତା' ବାପାମା'ଙ୍କ ପାଖରେ ଛାଡ଼ିଦେଇ ଆସିଲା । ଶାଶୁଶ୍ୱଶୁରଙ୍କ ଅନୁରୋଧରେ ସେ ସେଠାରେ ତିନିଦିନ ରହିଲା । ଯିବାକୁ ଲାଗିଥିଲା ଦୁଇଦିନ । ସେଠାରେ ରହିଲା

ତିନଦିନ । ପୁଣି ଫେରିବାକୁ ଲାଗିଲା ଦୁଇଦିନ । ସାତଦିନ ପରେ ସେ ଘରକୁ ଫେରି ଦେଖିଲା ଜମିବାଡ଼ିରେ ବହୁତ କାମ ଜମାହୋଇ ରହିଛି । ସେ କାମଦାମ କରି ଘରକୁ ଆସି ନିଜେ ମୁଠେ ରନ୍ଧାରନ୍ଧି କରି ଖାଏ । ସୁଲୋଚନା ମାସକ ପରେ ଫେରିବା କଥା ।

ଦିନେ ସନ୍ଧ୍ୟାବେଳେ ଗଙ୍ଗାଧର ଘରକୁ ଫେରୁଛି, ଦେଖିବା ବେଳକୁ ସୁଲୋଚନା ପେଡ଼ି ଧରି ଗାଁଦାଣ୍ଡରେ ପଶୁଛି ।



"ଇଏ କ'ଣ, ତୁମେ କ'ଣ ଏତେ ଶୀଘ୍ର ଚାଲିଆସିଲ ?" ଗଙ୍ଗାଧର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତୁମର ଏକୁଟିଆ ଅସୁବିଧା ହେଉଥିବ ଭାବି ଚାଲିଆସିଲି । ପାଖ ଗାଁରେ ଗୋଟିଏ ଦମ୍ପତି ଫେରୁଥିଲେ । ସେମାନଙ୍କୁ ସାଙ୍ଗ ପାଇଗଲି । କୌଣସି ଅସୁବିଧା ହୋଇନାହିଁ ।" ସୁଲୋଚନା କହିଲା ।

ଦୁହେଁ ଘରକୁ ଫେରିଲେ । ସେଦିନ ରାତିରେ ସୁଲୋଚନା ରୋଷେଇ କରିସାରି ଗଙ୍ଗାଧରକୁ ଖାଇବାକୁ ଦେଲା । ସେତେ ସ୍ୱାଦୁ ଖାଦ୍ୟ ଗଙ୍ଗାଧର କେବେ ଖାଇ ନ ଥିଲା । ସକାଳେ ଗଙ୍ଗାଧର ନିଦରୁ ଉଠିବା ବେଳକୁ ସୁଲୋଚନା ଘରଦ୍ୱାର ସଫାସୁତୁରା କରି, ନିଜେ ଗାଧୋଇ-ସାରି ତା'ପାଇଁ ଜଳଖିଆ ତିଆରି କରୁଛି ।

ସୁଲୋଚନାର ସେ ପରିବର୍ତ୍ତନ ଦେଖି ଗଙ୍ଗା-ଧରର ଆନନ୍ଦ କହିଲେ ନ ସରେ । ପୂର୍ବରୁ ସେ ସୁଲୋଚନାକୁ ଭୁଲ୍ ବୁଝିଥିଲା ଭାବି ମନେ ମନେ ଗ୍ଳାନି ଅନୁଭବ କଲା ।

କେଇଦିନ ସୁଖରେ କଟିଲା । ଦିନେ ମଝି-ରାତିରେ ଗଙ୍ଗାଧରର ନିଦ ଭାଙ୍ଗିଗଲା । ସେ ଦେଖିଲା ସୁଲୋଚନା ତା' ଶେଯରେ ନାହିଁ । ବାହାରେ ଜହ୍ନଆଲୁଅ ପଡ଼ିଥାଏ । ଝରକା ଦେଇ ଅନାଇ ଗଙ୍ଗାଧର ଯାହା ଦେଖିଲା, ସେଥିରେ ତା' ଦେହ ଶୀତେଇ ଉଠିଲା ।

ସେ ଦେଖିଲା, ସୁଲୋଚନା କୂଅଠୁ ଟିକିଏ ଦୂରରେ ଠିଆହୋଇ ହାତ ଅଳ୍ପ ଆନ୍ଦୋଳନ



କରିବା ମାନେ ବଳେ ବଳେ କୂଅରୁ ପାଣି ବାହାରିଆସୁଛି । ତା'ପରେ ସୁଲୋଚନା ଝାଡ଼ୁ ଆଡ଼କୁ ଅନାଇଲା । ଝାଡ଼ୁ ଆପଣାଛାଏଁ ଅଗଣା ପରିଷ୍କାର କରିବାକୁ ଲାଗିଗଲା ।

ତଟସ୍ଥ ହୋଇ ସେସବୁ ଦେଖୁଥାଏ ଗଙ୍ଗାଧର । ଯେତେବେଳେ ସୁଲୋଚନା କୋଠରି ଭିତରକୁ ଫେରିଆସୁଛି ବୋଲି ସେ ବୁଝିଲା, ସେ ନିଦର ଅଭିନୟ କରି ଶୋଇପଡ଼ିଲା ।

ପରଦିନ କ୍ଷେତରୁ ବାଟେ ବାଟେ କୌଣସି ତାନ୍ତ୍ରିକ ଘରକୁ ଯାଇ ଏ ସମ୍ପର୍କରେ ଆଲୋଚନା କରିବ ବୋଲି ଗଙ୍ଗାଧର ମନେ ମନେ ସ୍ଥିର କରିଥାଏ । କିନ୍ତୁ ବାଟରେ ଶ୍ୱଶୁର ତା' ଘରଆଡ଼େ ଆସୁଥିବାର ସେ ଦେଖିଲା ।

ଆପଣ ହଠାତ କେମିତି ଆସିଗଲେ ? ସବୁ ଭଲ ତ ?" ଗଙ୍ଗାଧର ପଚାରିଲା ।

"ସବୁ ଭଲ ନୁହେଁ, ବାପା···

ଶ୍ୱଶୁର ଆଉ କିଛି କହିବା ପୂର୍ବରୁ ଗଙ୍ଗାଧର କହିଲା, "ଆଚ୍ଛା, ଆଗେ ଘରକୁ ଚାଲନ୍ତୁ । ସୁଲୋଚନା ଆପଣଙ୍କୁ ଦେଖିଲେ କେତେ ଖୁସୀ ହେବ !"

"ସୁଲୋଚନା ? ସେ କ'ଣ ଏଠି ?" ଶ୍ୱଶୁର ଆଶ୍ଚର୍ଯ୍ୟ ହୋଇ ପଚାରିଲେ । ଗଙ୍ଗାଧର କୌଣସି ଉତ୍ତର ନ ଦେଇ ଶ୍ୱଶୁରଙ୍କୁ ଘରକୁ ନେଇଗଲା ।

କବାଟ ଖୋଲି ତା' ବାପାଙ୍କୁ ଦେଖି ସୁଲୋଚନା ଚିତ୍କାର କରିବା ସଙ୍ଗେ ସଙ୍ଗେ ତା' ବାପା ବି ଚିତ୍କାର କରିଉଠିଲେ । ଦୁହେଁ ଜ୍ଞାନ ହରାଇ ତଳେ ପଡ଼ିଗଲେ ।

ଗଙ୍ଗାଧର ଆଖପାଖ ଘରୁ ଲୋକଙ୍କୁ ଡାକିଆଣିଲା । ସେମାନେ ଆସି ଉଭୟଙ୍କ ଉପରେ ପାଣି ଛିଞ୍ଚି ଜ୍ଞାନ ଫେରାଇ ଆଣିବାକୁ ଚେଷ୍ଟା କଲେ ।

ପ୍ରଥମେ ଶ୍ୱଶୁରଙ୍କ ଜ୍ଞାନ ଫେରିଲା ।

ସେ କହିଲେ : ଗଙ୍ଗାଧର ତାଙ୍କ ଘରେ ଥିବା ବେଳେ ସେ ଓ ତାଙ୍କ ସ୍ତ୍ରୀ ବୁଝିପାରିଥିଲେ ଯେ ସୁଲୋଚନା ଜୁଆଁଇର ବିଶେଷ ଯତ୍ନ ନେଉନାହିଁ କି ସେ ଘରରେ ନିଜର କର୍ତ୍ତବ୍ୟ ସମ୍ପର୍କରେ ତାକୁ କିଛି ଜଣା ମଧ୍ୟ ନାହିଁ । ଗଙ୍ଗାଧର ଚାଲିଆସିବା ପରେ ଦିନେ ସୁଲୋଚନାକୁ ଧରି ସେମାନେ ଗୋଟିଏ ଦୂର ମନ୍ଦିରରୁ ଫେରୁଥିବା ବେଳେ ଝିଅ ମନରେ ସଦ୍‌ବୁଦ୍ଧିର ଉଦୟ

କଲ୍ ଭଲ ଉପଦେଶ ଦେଇ ଦେଇ ସେମାନେ ବାଟ ଚାଲୁଥା'ନ୍ତି । ସୁଲୋଚନା ଅଶାନ୍ତ ଆତ୍ମା ଭାବରେ ସେମାନଙ୍କ ଉପଦେଶ ଶୁଣୁଥାଏ ।

ସେମାନେ ଗୋଟିଏ ଶ୍ମଶାନ ଭିତର ଦେଇ ଆସୁଥା'ନ୍ତି । ସୁଲୋଚନା ହଠାତ୍ ବଡ଼ପାଟିରେ କହିଲା, "ବାପା ! ମୁଁ ଏଣିକି ମୋ ସ୍ୱାମୀଙ୍କର ସବୁ କଥା ବୁଝିବି । ନିଶ୍ଚିନ୍ତ ରୁହ ।"

ସୁଲୋଚନାର କଣ୍ଠସ୍ୱର ଶୁଣି ତା' ବାପା ଚମକି ପଡ଼ିଲେ । "ଝିଅ ! ତୋ' ସ୍ୱର ଏମିତି ବଦଳିଗଲା କାହିଁକି ?" ସୁଲୋଚନା ଖିଲଖିଲ ହସି ପ୍ରଶ୍ନର ଉତ୍ତର ନ ଦେଇ କହିଲା, "କହିଲି ପରା, ଏଣିକି ତାଙ୍କର ଯତ୍ନ ନେବି ! ନ ନେଇ କେଡ଼େ ଭୁଲ୍ କରିଛି । ପୁଣି ଥରେ ଯେତେବେଳେ ସୁଯୋଗ ପାଇଛି, ସେତେବେଳେ ସୁଯୋଗର ପୂରାପୂରି ଉପଯୋଗ କରିବି !"

"ଝିଅର ଅସ୍ୱାଭାବିକ କଥାବାର୍ତ୍ତା ଦେଖି ଆମେ ବୁଝିଲୁ କୌଣସି ଅଶାନ୍ତ ଆତ୍ମା ତା' ଉପରେ ସବାର ହୋଇଛି । ଆମେ ଚୁପ୍‌ଚାପ୍ ଘରକୁ ଫେରିଆସିଲୁ । ସକାଳେ ଦେଖିବା ବେଳକୁ ଘରେ ଝିଅ ନାହିଁ । ଖୋଜାଖୋଜି ଚାଲିଲା । ଦେଖିବା ବେଳକୁ ନଈକୂଳରେ ତା'ର ଲୁଗା ଖଣ୍ଡିଏ ପଡ଼ିଛି । ଆମେ ଭାବିଲୁ ଯେ ଯେଉଁ ପ୍ରେତାତ୍ମା ତା'ଉପରେ ସବାର ହୋଇଥିଲା, ସେ ତା'କୁ ନଈ ଭିତରକୁ ନେଇ-ଯାଇଛି । ଝିଅ ଆଉ ଜୀବନରେ ନାହିଁ ।"

ଟିକିଏ ରହି ତା'ପରେ ଗଙ୍ଗାଧରର ଶ୍ୱଶୁର ପୁଣି କହିଲେ, "ଏ ସମ୍ବାଦ ଏଠାରେ ଆଣି କପରି ଦେବି, ଏହି ଚିନ୍ତାରେ କେଇଦିନ ଗଲା । ଶେଷରେ ସବୁ କହିବାକୁ ଆସି ଦେଖୁଛି, ସୁଲୋଚନା ସେଦିନ ଆବିଷ୍ଟ ଭାବରେ ଯାହା



କହିଥିଲି, ସେକଥା ରକ୍ଷା କରି ଏଠାରେ ଆସି ପହଞ୍ଚିଛି ।"

ସେ ଏକଥା କହିସାରିବା ବେଳକୁ ସୁଲୋଚନା ଆଖି ଖୋଲି ଜୁଳୁଜୁଳୁ ଅନାଇବାକୁ ଆରମ୍ଭ କରିଥାଏ । ଗଙ୍ଗାଧର ତାକୁ କହିଲା, "ଦେଖ କିଏ ଆସିଛନ୍ତି !"

"ବାପା ଉପରେ ଆଖି ପଡ଼ିବା ମାତ୍ରେ ବିସ୍ମିତ ହୋଇ ସୁଲୋଚନା କହିଲା, "ବାପା ! ମୁଁ କେଉଁଠାରେ ? ଆରେ, ଇଏ ତ ମୋ ସ୍ୱାମୀଙ୍କ ଘର । ଏଠାକୁ ମୁଁ କେତେବେଳେ ଆସିଲି ?"

ଗଙ୍ଗାଧର ଓ ତା' ଶ୍ୱଶୁର ପରସ୍ପର ଚାହିଁ-ରହିଲେ । ସୁଲୋଚନା ତାହା ଲକ୍ଷ୍ୟ କରି ପୁଣି ପଚାରିଲା, "ତୁମ୍ଭେମାନେ ଉତ୍ତର ଦେଉନାହିଁ କାହିଁକି ? ମୁଁ କ'ଣ ଅସୁସ୍ଥ ଥିଲି ?"

ସମସ୍ତେ ବୁଝିଲେ ଯେ ସୁଲୋଚନାକୁ ଯେଉଁ ପ୍ରେତାତ୍ମା ଆୟତ୍ତ କରି ତା' ଅଜ୍ଞାତସାରରେ ତାକୁ ଏଠାକୁ ନେଇ ଆସିଥିଲା, ସେ ତାକୁ ଛାଡ଼ି ଚାଲିଗଲାଣି । ସେମାନେ ଧୀରେ ଧୀରେ ସବୁ-କଥା ଖୋଲି କହିଲେ ।

ଦୁଇଦିନ ପରେ ସୁଲୋଚନାର ବାପା ବିଦାୟ ନେଲେ । ସନ୍ଧ୍ୟାବେଳେ ଗଙ୍ଗାଧର ଏକାକୀ ବସି ଦୀର୍ଘ ନିଃଶ୍ୱାସ ଛାଡୁଥାଏ

"କାହାପାଇଁ ଦୁଃଖ କରୁଛ ?" ସୁଲୋଚନା ପଚାରିଲା ।

"ସତ କଥା କହିଲେ, ସେହି ପ୍ରେତାତ୍ମା ପାଇଁ । ସେ ତୁମ ଭିତରେ ଥାଇ ମୋର ଏଭଳି ସେବାଯତ୍ନ କରିଥିଲା ଯେ ସେକଥା କେବେ ଭୁଲିପାରିବି ନାହିଁ ।" ଗଙ୍ଗାଧର କହିଲା ।

ସୁଲୋଚନା ଲଜ୍ଜା ଅନୁଭବ କଲା । ସେହି-ଦିନରୁ ତା' ନିଜ ବ୍ୟବହାର ମଧ୍ୟ ବଦଳିଗଲା । ସେ ନିଷ୍ଠା ସହକାରେ ନିଜ କର୍ତ୍ତବ୍ୟ ତୁଲାଇବାକୁ ଲାଗିଲା ।

ଗଙ୍ଗାଧର ହସି ହସି କହେ, "ଯାହାହେଉ, ପ୍ରେତାତ୍ମା ପ୍ରଭାବରେ ମୋର ମଙ୍ଗଳହିଁ ହେଲା !"





# ପଦ୍ମାବତୀ

କିମ୍ବଦନ୍ତୀ କହେ, ସିଂହଳଦେଶର ରାଜା ବୃହଦ୍ବ୍ରତଙ୍କର ପଦ୍ମାବତୀ ନାମରେ ସୁନ୍ଦର ଝିଅଟିଏ ଥାଏ । ସେ ପିଲାବେଳୁ ଥିଲା ଶିବ-ଭକ୍ତ ।

ଥରେ ଶିବ ତାଙ୍କୁ ଦର୍ଶନ ଦେଇ କହିଲେ, ବିଷ୍ଣୁ ଅଂଶରେ ଜନ୍ମ ନେଇଥିବା ଜଣେ ବ୍ୟକ୍ତି ତୋର ସ୍ୱାମୀ ହେବେ । ତାଙ୍କ ବ୍ୟତୀତ ଅନ୍ୟ କେହି ତୋତେ ବିବାହ କରିବାକୁ ଇଚ୍ଛା ପ୍ରକାଶ କରି ଆସିଲେ ସେମାନେ ତତ୍‌କ୍ଷଣାତ୍ ସ୍ତ୍ରୀ-ଲୋକ ପାଲଟିଯିବେ ।”

ଏ କଥା ପଦ୍ମାବତୀ କାହାକୁ କହିଲେ ନାହିଁ । କିଛି ବର୍ଷ କଟିଗଲା । ପଦ୍ମାବତୀର ବିବାହ-ଯୋଗ୍ୟ ବୟସ ଉପସ୍ଥିତ ହେବାରୁ ତା'ର ପିତା ସ୍ୱୟଂବର ପ୍ରସ୍ତାବ ଦେଇ ଦେଶସାରା ଢେଙ୍ଗୁରା ପିଟାଇଲେ ।

ଅନେକ ରାଜ୍ୟରୁ ରାଜାମାନେ ଖବର ପାଇ ପଦ୍ମାବତୀର ସ୍ୱୟଂବରକୁ ଆସିଲେ । କିନ୍ତୁ ପଦ୍ମାବତୀ ସେମାନଙ୍କର ନିକଟତର ହେବା ମାତ୍ରେ ସେମାନେ ସମସ୍ତେ ସ୍ତ୍ରୀ ପାଲଟିଗଲେ ।

ଏ ଘଟଣାରେ ଶିବଙ୍କ କଥାର ଅଧା ସତ୍ୟ ପ୍ରମାଣିତ ହୋଇଗଲା । ପଦ୍ମାବତୀ ନିମନ୍ତେ ଉପଯୁକ୍ତ ପାତ୍ର ନ ପାଇ ତା' ବାପା ତିନିଥର ସ୍ୱୟଂବର ସଭା ଡକାଇଲେ । କିନ୍ତୁ ସବୁ ନିଷ୍ଫଳ ହେଲା ।

ପଦ୍ମାବତୀର ମନରେ ଏଇ ଚିନ୍ତା ଆସିଲା ଯେ ହୁଏତ ସେ କେବେ ମଧ୍ୟ ବିବାହ କରିପାରିବ ନାହିଁ । ଦିନେ ସେ ଉଦାସ ହୋଇ ଏକାକିନୀ ଉଦ୍ୟାନରେ ବସିଥାଏ । ଗୋଟିଏ ଶୁଆ କାହୁଁ ଉଡ଼ିଆସି କହିଲା, “ରାଜକୁମାରୀ ! ଦୁଃଖ କର-ନାହିଁ । ତୁମର ଯିଏ ସ୍ୱାମୀ ହେବେ ସେ ଖୁବ୍ ସୁନ୍ଦର । ମୁଁ ତାଙ୍କୁ ଦିନେ ଏଠାକୁ ନେଇଆସିବି ।”

ଶୁଆଠାରୁ ଏପରି କଥା ଶୁଣି ପଦ୍ମାବତୀର ମନରେ ଆଶା ଓ ବିଶ୍ୱାସ ଫେରିଆସିଲା । ସେ

ଭାବିଲା, ବୋଧ ହୁଏ ଶିବଙ୍କ କଥା ପୂର୍ଣ୍ଣ ହେବାକୁ ଯାଉଛି । କିନ୍ତୁ ଏ ଶୁଆଟି କିଏ ?

କମଳପୁରରେ ବିଷ୍ଣୁଯଶ ଓ ତାଙ୍କର ସ୍ତ୍ରୀ ରହୁଥାନ୍ତି । ତାଙ୍କର କଲ୍କି ନାମରେ ପୁଅଟିଏ ଥାଏ । ସେ ପରଶୁରାମଙ୍କ ପରି ସମସ୍ତ ବିଦ୍ୟାରେ ଥିଲେ ପାରଙ୍ଗମ । ସେ ମଧ୍ୟ ପଦ୍ମାବତୀ ପରି ଥିଲେ ଶିବଭକ୍ତ । ତାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ଶିବ ତାଙ୍କୁ ଦର୍ଶନ ଦେଇ ଗୋଟିଏ ଖଡ୍‌ଗ, ଗୋଟିଏ ଘୋଡ଼ା ଓ ଗୋଟିଏ ଶୁଆ ଉପହାର ଦେଲେ । ସେହି ଶୁଆଟିହିଁ ସିଂହଳ ଯାଇଥିଲା ଓ ପଦ୍ମାବତୀ ସହିତ ଦେଖା କରିଥିଲା । ସେ ପଦ୍ମାବତୀଙ୍କୁ କଲ୍କି ବିଷୟ ଶୁଣାଇ ପୁଣି ଫେରିଆସି କଲ୍କିଙ୍କୁ କହିଲା, "ରାଜକୁମାର, ସିଂହଳ ରାଜକୁମାରୀ ପଦ୍ମାବତୀ ଅତୀବ ସୁନ୍ଦରୀ ଓ ଗୁଣବତୀ । ସେ କେବଳ ତୁମରି ନିମନ୍ତେହିଁ ଯୋଗ୍ୟପାତ୍ରୀ ।"

ଏ କଥା ଶୁଣି କଲ୍କିଙ୍କ ମନରେ ପଦ୍ମାବତୀ ପ୍ରତି ଅନୁରାଗ ଜନ୍ମିଲା । ସେ ତତ୍‌କ୍ଷଣାତ୍ ସିଂହଳକୁ ଗଲେ ଓ ସ୍ନାନ କରିବାକୁ ଆସିଥିବା ପଦ୍ମାବତୀ ସହିତ ଉଦ୍ୟାନରେହିଁ ଦେଖା କଲେ । ପଦ୍ମାବତୀର ଏତେ ନିକଟକୁ ଆସି ସେତେ-ବେଳେ ତାଙ୍କର ସ୍ତ୍ରୀରୂପ ହେଲା ନାହିଁ, ପଦ୍ମାବତୀ ବୁଝିଗଲା ଯେ ସେଇ ହେଉଛନ୍ତି ତା' ପାଇଁ ଉଦ୍ଦିଷ୍ଟ ପତି । ସେ ସମସ୍ତ କଥା ଯାଇ ନିଜର ପିତାଙ୍କୁ ଜଣାଇଲା । ରାଜା ତ ଏହା ଅନେକ ଦିନରୁ ଶୁଣୁଥିଲେ । ତେଣୁ ସେ ଖୁସୀ ହୋଇ ଖୁବ୍ ଆଡ଼ମ୍ବର ସହକାରେ ଦୁହିଁଙ୍କର ବିବାହ ଦେଲେ । ଏହି ଶୁଭ ଅବସରରେ ସ୍ତ୍ରୀରୂପରେ ଥିବା ରାଜକୁମାରମାନେ କଲ୍କିଙ୍କୁ ନିବେଦନ କଲେ କି ସେମାନେ ଯେପରି ନିଜନିଜର ପୂର୍ବ ରୂପ ପାଇପାରନ୍ତି । କଲ୍କି କହିଲେ ଯଦି ସେମାନେ ରେବା ନଦୀରେ ସ୍ନାନ କରିବେ ତେବେ ନିଜନିଜର ପୂର୍ବରୂପ ଫେରିପାଇବେ । ସେମାନେ ସେହିପରି କଲେ ।





# ଦେବୀ ଭାଗବତ

ବିଖ୍ୟାତ ହୈହୟ ବଂଶରେ ଜନ୍ମଗ୍ରହଣ କରିଥିଲେ କାର୍ତ୍ତବୀର୍ଯ୍ୟ । ସେ ଅସାଧାରଣ ଶୌର୍ଯ୍ୟ ଓ ପରାକ୍ରମର ଅଧିକାରୀ ଥିଲେ । ତାଙ୍କର ସହସ୍ର ହସ୍ତ ଥିଲା । ସେ ଅନେକ ପ୍ରକାର ଯଜ୍ଞ କରୁଥିଲେ ଏବଂ ଉଦାର ଭାବରେ ଦାନ ଦକ୍ଷିଣା ଦେଉଥିଲେ । ଦତ୍ତାତ୍ରେୟ ତାଙ୍କର ଗୁରୁ ଥିଲେ । ଭୃଗୁ ଥିଲେ ତାଙ୍କ ପୁରୋହିତ । କାର୍ତ୍ତବୀର୍ଯ୍ୟଙ୍କ ନିକଟରୁ ଦାନ ପାଇ ଭୃଗୁ ଖୁବ୍ ବିତ୍ତବାନ୍ ହୋଇଉଠିଥିଲେ ।

ସବୁଦିନ ସମାନ ଯାଏ ନାହିଁ । କାର୍ତ୍ତବୀର୍ଯ୍ୟ ସିନା ଏଡ଼େ ଯୋଗ୍ୟ ରାଜା ଥିଲେ, ତାଙ୍କ ବଂଶର ଅନ୍ୟମାନେ କିନ୍ତୁ ସେପରି ନ ଥିଲେ । ସେମାନେ ବିଳାସ ବ୍ୟସନରେ ସମସ୍ତ ନଷ୍ଟ କରୁଥିଲେ । କାର୍ତ୍ତବୀର୍ଯ୍ୟ ନିଜ କର୍ତ୍ତବ୍ୟ କର୍ମରେ ଏକାଗ୍ର ରହି ଅନ୍ୟମାନଙ୍କ କାର୍ଯ୍ୟକଳାପ କଥା ଜାଣୁ ନ ଥିଲେ ।

କାର୍ତ୍ତବୀର୍ଯ୍ୟଙ୍କ ମୃତ୍ୟୁ ପରେ ତାଙ୍କ ବଂଶଧରମାନେ ଦରିଦ୍ର ହୋଇଗଲେ । ସେମାନେ ଯାଇ ଭୃଗୁବଂଶୀମାନଙ୍କୁ ତାଙ୍କ ସଞ୍ଚିତ ବିତ୍ତରୁ କିଛି ସେମାନଙ୍କୁ ଦେଇଦେବାକୁ ଅନୁରୋଧ କଲେ ।

ଭୃଗୁବଂଶୀମାନେ ରାଜପୁତ୍ରମାନଙ୍କୁ ନିଜ ସଞ୍ଚିତ ଧନ ଦେବାକୁ ଚାହୁଁ ନ ଥିଲେ । ସେମାନେ ନିଜ ଧନତକ ନେଇ ପାହାଡ଼ ଗୁମ୍ଫାମାନଙ୍କରେ ଲୁଚାଇରଖିଲେ । ରାଜପୁତ୍ରମାନେ ଯେତେବେଳେ ଅନୁରୋଧ କରି ଧନ ପାଇଲେ ନାହିଁ, ସେତେବେଳେ ସେମାନେ ଯାଇ ପୁରୋହିତଙ୍କ ଘର



ତଲାସ କଲେ । ଘରେ କିଛି ନ ଥିଲା । କିନ୍ତୁ ସନ୍ଧାନ ପାଇ ସେମାନେ ପାହାଡ଼ରେ ପହଞ୍ଚିଲେ ଓ ସେଠାରେ ଥିବା ଧନସମ୍ପଦ ଲୁଟ୍ କରିବା ସଙ୍ଗେ ସଙ୍ଗେ ଭୃଗୁବଂଶର ସମସ୍ତଙ୍କୁ ହତ୍ୟା କଲେ ।

ସେ ଅଞ୍ଚଳରେ ରହୁଥିବା ମୁନିଋଷିମାନେ ସେ ଘଟଣା ଦେଖି ହୈହୟ ରାଜପୁତ୍ରମାନଙ୍କୁ କହିଲେ, "ତୁମ୍ଭେମାନେ ରକ୍ଷକ ହୋଇ ଭକ୍ଷକ କାମ କରୁଛ କିପରି ? ପୁରୋହିତ ବଂଶର ଲୋକଙ୍କୁ ତୁମେ ହତ୍ୟା କରୁଛ; ସେମାନଙ୍କ ନାରୀମାନଙ୍କୁ ବି କଷଣ ଦେଉଛ, ଏଭଳି ପାପର ପରିଣାମ କ'ଣ ହୋଇପାରେ ଭାବିଛ ତ ?"

ରାଜପୁତ୍ରମାନେ ପ୍ରଥମେ ମୁନି ଋଷିମାନଙ୍କ କଥା ପ୍ରତି କର୍ଣ୍ଣପାତ କଲେ ନାହିଁ । ସେମାନେ ନିଜେ ଲୁଣ୍ଠନ ଓ ହିଂସାକର୍ମରେ ମତ୍ତ ରହିଲେ । କିନ୍ତୁ ମୁନିଋଷିମାନେ ସେମାନଙ୍କ ଆଗରେ ଠିଆହୋଇ ସେମାନଙ୍କୁ ବାଧା ଦେଲେ ଓ କହିଲେ, "ଏପରି ଭାବରେ ନିଜର ସର୍ବନାଶ ଡାକିଆଣ ନାହିଁ । ତୁମ ଗୌରବମୟ ବଂଶର ମାନ ସମ୍ମାନ ଯେତିକି ବିସର୍ଜନ ଦେଲେଣି ତ ଦେଲେଣି, ଏଣିକି କ୍ଷାନ୍ତ ହୁଅ । ପ୍ରାସାଦକୁ ଫେରିଯାଅ । ନହେଲେ ଅନୁତାପ କରିବ ।"

ମୁନିମାନଙ୍କ ବଚନ ଶୁଣି ରାଜପୁତ୍ରମାନେ କହିଲେ, "ଆପଣମାନେ ସାଧୁ ଓ ମହାପୁରୁଷ । କିନ୍ତୁ ଆମର ଏ ପୁରୋହିତ ବଂଶର ଲୋକେ ଅସାଧୁ । ଏମାନେ ଆମରି ଧନରେ ଧନୀ ହୋଇଛନ୍ତି । ଅଥଚ ଆମ ପ୍ରତି ଏମାନଙ୍କର ଟିକିଏ ମଧ୍ୟ ସହାନୁଭୂତି ନାହିଁ । ଧନ କ'ଣ ପୋତା ହେବା ସକାଶେ ଉଦ୍ଦିଷ୍ଟ ? ଏମାନେ ଚୋର ଭଳି ଧନ ଲୁଚାଇ ରଖିଛନ୍ତି । ଚୋରଙ୍କୁ ବଧ କରିବା ପାପ ହୋଇପାରେନା । କଥାରେ ଅଛି, ଖର୍ଚ୍ଚ ନ ହେବା ଅର୍ଥ ହଜେ ନା ହଜେ ରାଜା ହାତରେ କିମ୍ବା ଚୋର ହାତରେ ପଡ଼ିବ । ନ ହେଲେ ଅଗ୍ନିରେ ନାଶ ଯିବ । ଆମେ ରାଜବଂଶୀମାନେ ଏମାନଙ୍କ ଧନ ଅପହରଣ କରିବାରେ କୌଣସି ଅନ୍ୟାୟ ନାହିଁ ।"

ମୁନିଋଷିମାନଙ୍କ ସହ ଏହିପରି ଯୁକ୍ତିତର୍କ କରି ରାଜପୁତ୍ରମାନେ ପୁଣି ଯାଇ ଭୃଗୁବଂଶୀଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ ।

ଅର୍ଥ ମଣିଷର କେତେ ପ୍ରକାର ଅନିଷ୍ଟର ହେତୁ ହୋଇପାରେ, ଏ ଘଟଣା ତା'ର ଏକ ଦୃଷ୍ଟାନ୍ତ । ଏକ ଦିଗରେ ଏହା ଭୃଗୁବଂଶର ସର୍ବନାଶ କଲା, ଅନ୍ୟ ଦିଗରେ ଏହା ହୈହୟ-ମାନଙ୍କୁ ପାପୀ କଲା ।

ଭୃଗୁନାରୀମାନେ ହିମାଳୟ ପଳାଇଗଲେ । ସେଠାରେ ମାଟିରେ ସେମାନେ ଗୌରୀଙ୍କ ପ୍ରତିମା ନିର୍ମାଣ କରି ନଈକୂଳରେ ସେ ପ୍ରତିମା ପ୍ରତିଷ୍ଠା କରି ତାଙ୍କ ପୂଜା ଆରାଧନା ଭିତରେ ମୃତ୍ୟୁକୁ ଅପେକ୍ଷା କରିବାକୁ ଲାଗିଲେ ।

ଦିନେ ରାତିରେ ଭୃଗୁନାରୀମାନେ ସ୍ୱପ୍ନାବସ୍ଥା ହୋଇ ଦେଖିଲେ ଦେବୀ ସେମାନଙ୍କୁ କହୁଛନ୍ତି, "ତୁମମାନଙ୍କ ଭିତରୁ ଜଣକର ଊରୁଦେଶରୁ ମୋ ବିଭୂତି ନେଇ ଗୋଟିଏ ସନ୍ତାନ ଜନ୍ମ ହେବ । ସେ ତୁମମାନଙ୍କୁ ରକ୍ଷା କରିବ ।"

ନିଦରୁ ଉଠି ଭୃଗୁନାରୀମାନେ ଆନନ୍ଦିତ ହେଲେ ।

ସ୍ୱପ୍ନ ସତ୍ୟ ହେଲା । ଦିନେ ଏକ ତେଜବାନ୍ ପୁତ୍ର ଜଣେ ଭୃଗୁନାରୀଠାରୁ ଜନ୍ମଗ୍ରହଣ କଲା । ସେ ତେଜ ଏଡ଼ିକ ପ୍ରଚଣ୍ଡ ଯେ ହୈହୟମାନଙ୍କର କୌଣସି ଚର ସେଠାରେ ପହଞ୍ଚି ସେ ଶିଶୁ କୁ ଅନାଇଦେବା ମାତ୍ରେ ଅନ୍ଧ ହୋଇଯାଉଥିଲା । ଶେଷକୁ ହୈହୟମାନେ ସେ ଅପୂର୍ବ ଶିଶୁର





ସମ୍ବାଦ ଶୁଣି ତାକୁ ମାରିବା ଉଦ୍ଦେଶ୍ୟରେ ସେଠାରେ ପହଞ୍ଚିବା ମାନେ ଅନ୍ଧ ହୋଇଗଲେ ।

ସେମାନେ ଆଉ କିଛି ଗତି ନ ଦେଖି ସେ ଶିଶୁର ଜନନୀଙ୍କୁ କରଯୋଡ଼ ହୋଇ ପ୍ରାର୍ଥନା କଲେ, "ଅନୁଗ୍ରହ କରି ଆମକୁ ଏ ଅନ୍ଧତ୍ୱରୁ ରକ୍ଷା କରନ୍ତୁ । ଆମେ ଭବିଷ୍ୟତରେ କଦାପି ଭୃଗୁବଂଶର କୌଣସି ଲୋକ ପ୍ରତି ତିଳେ ମଧ୍ୟ ଅନ୍ୟାୟ କରିବୁ ନାହିଁ । ଆମେ ଏଠାରୁ ପଳାଇଯିବୁ । ଆପଣ ଆପଣଙ୍କ ଅସାଧାରଣ ପୁତ୍ର ସହ ସୁଖରେ ବାସ କରୁଥାନ୍ତୁ ।"

ସନ୍ତାନର ଜନନୀ କହିଲେ, "ମୋ ପୁତ୍ର ଯୋଗୁ ଯଦି ତୁମମାନେ ଅନ୍ଧ ହୋଇଯାଇଛ, ତେବେ ସେ ପିଲା ତୁମମାନଙ୍କ ଦୃଷ୍ଟିଶକ୍ତି ଫେରାଇଦେଇ ପାରିବ, ମୁଁ କରିବ କ'ଣ ? ତୁମ୍ଭେମାନେ ଯେଉଁଭଳି ଅନାଚାର କରିଛ, ତା'ର ତୁଳନା ନାହିଁ । ନିର୍ଦ୍ଦୋଷ ଭୃଗୁବଂଶୀମାନଙ୍କୁ ହତ୍ୟା କରିଛ । ବୃଦ୍ଧ ଓ ଶିଶୁମାନଙ୍କୁ ମଧ୍ୟ ବାଦ ଦେଇନାହଁ । ଗର୍ଭବତୀ ନାରୀମାନଙ୍କୁ ଯାତନା ଦେଇଛ । ତୁମମାନଙ୍କୁ ଦମନ କରିବା ନିମନ୍ତେ ଏ ଶିଶୁ ଜନ୍ମଗ୍ରହଣ କରିଛି । ତୁମେମାନେ ତାକୁ ତୁଷ୍ଟ କରିପାରିଲେ ହୁଏତ ଦୃଷ୍ଟିଶକ୍ତି ଫେରିପାଇବ ।"

ଔର୍ଯ୍ୟ (ଊରୁରୁ ଜନ୍ମ ହୋଇଥିବା ହେତୁ) ନାମକ ସେହି ତେଜୋମୟ ଶିଶୁପାଖରେ ହୈହୟମାନେ ନାନା ପ୍ରକାର ବିନତି କଲେ । ଶେଷକୁ ଔର୍ଯ୍ୟ କହିଲେ, "ଦେଖ ତୁମ ଭଳି ମୂଢ଼ମାନଙ୍କୁ ଶିକ୍ଷା ଦେବା ନିମନ୍ତେ ମୋତେ ଏପରି ଶକ୍ତି ଦେଇଛନ୍ତି । ତୁମ୍ଭେମାନେ ଯଦି ପ୍ରକୃତରେ ନିଜ କୃତକର୍ମ ସକାଶେ ଅନୁତାପ କରୁଛ, ତେବେ ଦେବୀଙ୍କୁ ମନେ ମନେ ପ୍ରଣାମ କର ଓ ତାଙ୍କ ପାଖରେ ଅପରାଧ ସ୍ୱୀକାର କର । ମୋର କ୍ରୋଧ ଶାନ୍ତ ହୋଇଛି ।"

ହୈହୟମାନେ ଔର୍ଯ୍ୟଙ୍କ ପରାମର୍ଶ ଅନୁସାରେ କାମ କଲେ ଓ ଦୃଷ୍ଟିଶକ୍ତି ଫେରିପାଇଲେ ।

ଭରତବଂଶର ମୂଳପୁରୁଷ ହେଲେ ଭରତ ।



ଯାଦବବଂଶର ପ୍ରତିଷ୍ଠାତା ହେଲେ ଯଦୁ । ହୈହୟ ବଂଶର କିପରି ପ୍ରତିଷ୍ଠା ହେଲା, ସେ ସମ୍ପର୍କରେ ଏକ କାହାଣୀ ଅଛି । ସୂର୍ଯ୍ୟଙ୍କର ଗୋଟିଏ ପୁତ୍ରର ନାମ ରେବନ୍ତ । ସେ ଥରେ ଉଚ୍ଚୈଶ୍ରବା ଅଶ୍ୱ ଆରୋହଣ କରି ବିଷ୍ଣୁଙ୍କ ଦର୍ଶନ ସକାଶେ ବୈକୁଣ୍ଠକୁ ଗଲେ ।

ଉଚ୍ଚୈଶ୍ରବାକୁ ଦେଖିପକାଇଲେ ଲକ୍ଷ୍ମୀ । ସମୁଦ୍ର ମନ୍ଥନ ବେଳେ ସାଗର ମଧ୍ୟରୁ ବାହାରିଥିଲେ ଉଚ୍ଚୈଶ୍ରବା । ଲକ୍ଷ୍ମୀ ମଧ୍ୟ ସାଗର ଭିତରୁ ବାହାରିଥିଲେ । ତେଣୁ ଲକ୍ଷ୍ମୀ ଉଚ୍ଚୈଶ୍ରବାକୁ ନିଜର ଭାଇ ଭଳି ଦେଖୁଥିଲେ । ବହୁଦିନ ପରେ ସେ ଉଚ୍ଚୈଶ୍ରବାକୁ ଦେଖିବାରୁ ତାଙ୍କ ହୃଦୟରେ ଭାଇ ପ୍ରତି ସ୍ନେହଭାବ ଉଚ୍ଛୁଳିଉଠିଲା । ସେ ଏକ ଧ୍ୟାନରେ ତାକୁ ଦେଖୁଥାନ୍ତି ।

ସେତିକବେଳେ ସବୁଦିନେ ଲକ୍ଷ୍ମୀ ବିଷ୍ଣୁଙ୍କୁ ଆରାଧନା କରୁଥାନ୍ତି । ସେଦିନ ଲକ୍ଷ୍ମୀ ତାଙ୍କ କଥା ମନେ ନ ପକାଇବାର ଦେଖି ବିଷ୍ଣୁ କହିପକାଇଲେ, "ଲକ୍ଷ୍ମୀ ଯାହା ପ୍ରତି ଏତେ ସ୍ନେହଶୀଳ, ସେ ତାହାରୂପରେ ହୋଇଗଲେ ତାଙ୍କର ସେ ଗଦ୍‌ଗଦ ଭାବ କଟିଯିବ ।"

ବିଷ୍ଣୁ ଏ କଥା କହିବା ମାତ୍ରେ ଲକ୍ଷ୍ମୀ ଚମକିପଡ଼ିଲେ । "ମୁଁ କ'ଣ ତେବେ ଅଶ୍ୱରୂପ ପାଇବି ?" ସେ ବିଷ୍ଣୁଙ୍କ ପାଖକୁ ଯାଇ ପ୍ରଶ୍ନ କଲେ ।

"ଏ ଚରାଚର ବିଶ୍ୱର ସମସ୍ତ ପ୍ରାଣୀ ଆମରି ରୂପ । ଅଶ୍ୱରୂପ ପାଇଲେ କ୍ଷତି କ'ଣ ?" ବିଷ୍ଣୁ ହସି କହିଲେ ।

"ମୋତେ କେତେଦିନ ପର୍ଯ୍ୟନ୍ତ ସେ ରୂପରେ ରହିବାକୁ ହେବ ?" ଲକ୍ଷ୍ମୀ ପଚାରିଲେ ।

"ମୋହରି ଭଳି ଦେଖିବାକୁ ଏକ ମାନବଶିଶୁ ତୁମଠାରୁ ଜନ୍ମଗ୍ରହଣ କରିବ । ସେ ଶିଶୁର ପୃଥିବୀରେ ଗୋଟିଏ ବଡ଼ ଭୂମିକା ରହିଛି । ସେ ଜନ୍ମଗ୍ରହଣ କରିବା ପରେ ତୁମେ ତୁମ ଦିବ୍ୟରୂପ ଫେରିପାଇ ବୈକୁଣ୍ଠକୁ ଫେରିବ ।" ବିଷ୍ଣୁ କହିଲେ ।

ଲକ୍ଷ୍ମୀଙ୍କୁ ଅଶ୍ୱରୂପ ଧରି ଗୋଟିଏ ବଣ



ଭିତରେ ରହିବାକୁ ଚାହିଁଲ । ସେଠାରେ ସେ ଶିବଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଶିବ ଉପସ୍ଥିତ ହୋଇ ପ୍ରଶ୍ନ କଲେ, "ମା, ତୁମେ ମୋତେ କାହିଁକି ସ୍ମରଣ କରୁଛ ?"

ଅଶ୍ୱରୂପିଣୀ ଲକ୍ଷ୍ମୀ କହିଲେ, "ବିଧିର ବିଚିତ୍ର ବିଧାନରେ ମୋର ଆଜି ଏ ଅବସ୍ଥା । ଯେଉଁ ବିଷ୍ଣୁଙ୍କ ଇଚ୍ଛାରେ ମୋର ଏପରି ଅବସ୍ଥା ହୋଇଛି, ତାଙ୍କୁ ବା ପ୍ରାର୍ଥନା କରି ଜଣାଇବି କ'ଣ ? ତେଣୁ ଆପଣଙ୍କୁ ଡାକିଲି ।"

"ମୋତେ କ'ଣ କରିବାକୁ ହେବ ?" ଶିବ ଶ୍ରଦ୍ଧାଭରେ ପ୍ରଶ୍ନ କଲେ ।

"ମୋତେ ଏପରି ଅବସ୍ଥାରେ କେତେକାଳ ରହିବାକୁ ପଡ଼ିବ ବୁଝିପାରୁନାହିଁ । ଆପଣ ଯଦି ବିଷ୍ଣୁଙ୍କ ପାଖରୁ ବୁଝି ମୋତେ କହି-ପାରନ୍ତେ, ତେବେ ମୁଁ ଉପକୃତ ହୁଅନ୍ତି ।" ଲକ୍ଷ୍ମୀ କହିଲେ ।

"ମା, ତୁମେ ଚିନ୍ତା କର ନାହିଁ । ତୁମେ ଉଚ୍ଚୈଃଶ୍ରବାକୁ ଦେଖି ତା' ପ୍ରତି ସ୍ନେହ ଅନୁଭବ କଲ ବୋଲି ତୁମକୁ ଯଦି ଅଶ୍ୱରୂପ ଗ୍ରହଣ କରିବାକୁ ଚାହିଁଲ, ବିଷ୍ଣୁ କ'ଣ ନିରାପଦ ରହି ପାରିବେ ? ତାଙ୍କ ଅବସ୍ଥା ମଧ୍ୟ ତୁମରି ପରି ହେବ ।" ଶିବ ହସି କହିଲେ ।

"ଆପଣ କ'ଣ କହୁଛନ୍ତି ମୁଁ ବୁଝି ପାରୁ-ନାହିଁ ।" ଲକ୍ଷ୍ମୀ ଆଗ୍ରହୀ ହୋଇ ବୁଝିବାକୁ ଚେଷ୍ଟା କଲେ ।

"ବିଷ୍ଣୁ ବର୍ତ୍ତମାନ ତୁମର ଅଶ୍ୱରୂପ କଥା ଚିନ୍ତା କରୁଛନ୍ତି । ତେଣୁ ଚିନ୍ତାରେ ନିମଗ୍ନ ରହି ସେ ମଧ୍ୟ ଅଶ୍ୱରୂପ ଧରି ଏଠାରେ ପହଞ୍ଚିବା ଅସମ୍ଭବ ନୁହେଁ । ସେ ଯାହା ହେଉ, ମୁଁ ମୋର ଦୂତ ପଠାଇ ସନ୍ଧାନ ନେଉଛି ।" ଶିବ ଲକ୍ଷ୍ମୀଙ୍କୁ ଏହା କହି ଆଶ୍ୱାସନା ଦେଇ ବିଦାୟ ନେଲେ ।

ଚିତ୍ରରୂପ ନାମକ ଜଣେ ପ୍ରମଥଙ୍କୁ ଶିବ ଦୂତ କରି ବିଷ୍ଣୁଙ୍କ ପାଖକୁ ପଠାଇଲେ । ଚିତ୍ରରୂପ ଯାଇ ବୈକୁଣ୍ଠରେ ପହଞ୍ଚିବା ବେଳକୁ ବିଷ୍ଣୁ ଲକ୍ଷ୍ମୀଙ୍କ ଅଶ୍ୱରୂପ ବିଷୟରେହିଁ ଏକାଗ୍ର ହୋଇ ବସିଥିଲେ ।

ଶିବଦୂତ ସେଠାରେ ପହଞ୍ଚି ତାଙ୍କୁ କହିଲେ, "ଲକ୍ଷ୍ମୀଦେବୀଙ୍କୁ ଅଶ୍ୱରୂପେ ଏକାକିନୀ ବନସ୍ତରେ ବିଚରଣ କରିବାକୁ ଛାଡ଼ିଦେଇ ଆପଣ ବୈକୁଣ୍ଠରେ ରହିବା କ'ଣ ସୁନ୍ଦର ହେବ ? ଲକ୍ଷ୍ମୀଦେବୀ ଅନୁପସ୍ଥିତ ରହିଲେ ପୃଥିବୀ ଚଳିବ କିପରି ? ଶିବଙ୍କର ଇଚ୍ଛା, ତୁରନ୍ତ ଲକ୍ଷ୍ମୀଦେବୀଙ୍କ ପ୍ରତ୍ୟାବର୍ତ୍ତନ ବ୍ୟବସ୍ଥା କରନ୍ତୁ ।"

ବିଷ୍ଣୁ ଦୂତକୁ ଶିବଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇ ବିଦାୟ ଦେଲେ । ଅଳ୍ପ ସମୟ ଉତ୍ତାରୁ, ଅଶ୍ୱରୂପୀ ଲକ୍ଷ୍ମୀଙ୍କ ଚିନ୍ତାରେ ଏକାଗ୍ର ହେବା କାରଣରୁ ବିଷ୍ଣୁ ସ୍ୱୟଂ ଅଶ୍ୱ ପାଲଟିଗଲେ ଓ ପୃଥିବୀକୁ ଆସି ଲକ୍ଷ୍ମୀଦେବୀ ବିଚରଣ କରୁଥିବା ବନସ୍ତରେ ପହଞ୍ଚିଲେ ।

ଯଥା ସମୟରେ ସେ ଅଶ୍ୱଦମ୍ପତି ନିକଟରୁ ଜନ୍ମଗ୍ରହଣ କଲା ଗୋଟିଏ ନରଦେହୀ ସୁନ୍ଦର ସନ୍ତାନ ।

ଅଶ୍ୱରୂପୀ ବିଷ୍ଣୁ କହିଲେ, "ଏଥର ବୈକୁଣ୍ଠକୁ ଫେରିଯିବାର ସମୟ ହେଲା ।"

"ଏ ନବଜାତ ସନ୍ତାନକୁ ଛାଡ଼ି ଯିବ କିପରି ? କୌଣସି ଜନନୀ ପକ୍ଷରେ କ'ଣ ଏହା ସମ୍ଭବ ?" ପ୍ରଶ୍ନ କଲେ ଲକ୍ଷ୍ମୀ ।

"ପୁଣି ପୃଥିବୀର ମାୟାରେ ପଡ଼ୁଛ ?" ଅଶ୍ୱରୂପୀ ବିଷ୍ଣୁ ଲକ୍ଷ୍ମୀଙ୍କୁ ଉତ୍ତର ଦେଲେ ।

"ଏ ସନ୍ତାନ ଦେଖିବାକୁ ତୁମ ପରି । ଏହାକୁ ମୁଁ ଯେତେବେଳେ ଜନ୍ମ ଦେଇଛି, ସେତେବେଳେ ଏହାର ରକ୍ଷା ସକାଶେ ମୁଁ ଦାୟୀ । ଛାଡ଼ିଦେଇ ଯିବ କିପରି ?" ଲକ୍ଷ୍ମୀ ନିଜ ପ୍ରଶ୍ନର ପୁନରାବୃତ୍ତି କଲେ ।

"ଚିନ୍ତା ନାହିଁ । ଏ ଶିଶୁର ଭବିଷ୍ୟତ ନିର୍ଦ୍ଦିଷ୍ଟ ହୋଇଛି । ରାଜା ଯଯାତିଙ୍କର ତୁର୍ବସୁ ନାମକ ପୁତ୍ର ଗୋଟିଏ ସନ୍ତାନ ପାଇବା ସକାଶେ ତପ କରୁଛନ୍ତି । ତୁର୍ବସୁ ଯେପରି ଏ ଶିଶୁକୁ ପାଇବେ ସେ ବ୍ୟବସ୍ଥା ହୋଇସାରିଛି ।" ବିଷ୍ଣୁ କହିଲେ ।



# ପଶୁ ଓ ମଣିଷ

ପ୍ରଦୋଷ ଓ ରବି ଦୁଇ ପ୍ରତିବେଶୀ । ପ୍ରଦୋଷର ସ୍ତ୍ରୀ ଶାନ୍ତି ଓ ରବିର ସ୍ତ୍ରୀ ବାସନ୍ତୀ ସବୁଦିନେ ଝଗଡ଼ା କରୁଥାନ୍ତି । ପାଖ ପଡ଼ୋଶୀର ଲୋକେ ସେମାନଙ୍କ ଝଗଡ଼ା ବେଶ୍ ଉପଭୋଗ କରୁଥାନ୍ତି ।

ଦିନେ ପ୍ରଦୋଷ ଗୋଟିଏ କୁକୁରଛୁଆ ଘରକୁ ନେଇଆସିଲା । ରବି ଘରେ ବିଲେଇଛୁଆଟିଏ ଥାଏ । କୁକୁର ଓ ବିଲେଇ ପରସ୍ପରକୁ ଦେଖି ବିଗୁଡ଼ୁଥାନ୍ତି ।

ଲୋକେ କହିବାର ଶୁଣାଗଲା, "ଯାହାର ବିଲେଇ କୁକୁର ଏମାନେ ! ଝଗଡ଼ା ନ କରିବେ ତ କରିବେ କ'ଣ ?"

ଶାନ୍ତି ଓ ବାସନ୍ତୀ ଏହା ଶୁଣି ଲଜ୍ଜା ଅନୁଭବ କଲେ । କିନ୍ତୁ ସେମାନଙ୍କ ଝଗଡ଼ା ବନ୍ଦ ହେଲା ନାହିଁ ।

କିଛିଦିନ ଭିତରେ ଦେଖାଗଲା, କୁକୁର ଓ ବିଲେଇଙ୍କ ଭିତରେ ଭାବ ହୋଇଯାଇଛି । ଦୁହେଁ ଗୋଟିଏ ପାତ୍ରରୁ ଖାଉଛନ୍ତି, ଖେଳୁଛନ୍ତି ।

ଲୋକେ କହିଲେ, "ଦେଖ, ଦେଖ, ପଶୁଙ୍କ ଭିତରେ ପ୍ରୀତିଭାବ ସମ୍ଭବ । କିନ୍ତୁ ମଣିଷଙ୍କ ଭିତରେ ନୁହେଁ ।" ଶାନ୍ତି ଓ ବାସନ୍ତୀ ଏ ମନ୍ତବ୍ୟ ଶୁଣିଲେ । ଏହାପରେ ଯାଇ ସେମାନେ ଝଗଡ଼ା ବନ୍ଦ କଲେ ।





# ସହନଶୀଳତା

ଶ୍ୟାମ ତା' ମା'ଙ୍କ କଥାରେ ମୋଟେ କାନ ଦେଉ ନ ଥାଏ । ଏଣେତେଣେ ଯାଇ ଦୁଷ୍ଟାମି କରୁଥାଏ । ଲୋକଙ୍କ ସାଙ୍ଗରେ କଜିଆ କରୁଥାଏ । ହାତରେ ପଇସା ପଡ଼ିଲେ ଅଯଥା କାମରେ ଖର୍ଚ୍ଚ କରିଦିଏ ।

ଦିନେ ଗାଁ ରାସ୍ତାରେ ଶ୍ୟାମ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ସହ ଝଗଡ଼ା କଲା । ତାଙ୍କୁ ଦୁଇ-ପଦ କଡ଼ା କରି ଶୁଣାଇଦେଲା । ଭଦ୍ରଲୋକଙ୍କ ଅପମାନ ଦେଖି ଗାଁର କେତେଜଣ ଲୋକ ଦୌଡ଼ିଆସିଲେ ଏବଂ ଶ୍ୟାମକୁ ବାଡ଼େଇବାକୁ ବସିଲେ ।

ସେତିକିବେଳେ ଶ୍ୟାମର ମା' ସେଠାରେ ପହଞ୍ଚିଯାଇ ଶ୍ୟାମ ତରଫରୁ ଭଦ୍ରଲୋକଙ୍କୁ କ୍ଷମା ମାଗିଲେ; ଅନ୍ୟମାନଙ୍କୁ ମଧୁର କଥା କହି ସେଠାରୁ ଫେରାଇଦେଲେ । ଶ୍ୟାମକୁ ଧରି ନିଜ ଘରକୁ ଫେରିଲେ ।

"ପୁଅ, ତୁ ଭଦ୍ରଲୋକଙ୍କ ସହ ଏଭଳି ଅଭଦ୍ର ବ୍ୟବହାର କଲୁ କିପରି ?" ମା' ପଚାରିଲେ ।

"ମା', ସେ ପ୍ରଥମେ ମୋ ସହ ଖରାପ ବ୍ୟବହାର କଲେ ।" ଶ୍ୟାମ କହିଲା ।

"ପୁଅ, ସେ ବଡ଼ଲୋକ । ସେ ଖରାପ ବ୍ୟବହାର କଲେ ମଧ୍ୟ ତୁ ସହିଯିବା ଉଚିତ ଥିଲା ।" ମା' କହିଲେ ।

"ସହି ନ ଗଲେ କ'ଣ ହେବ ?" ଶ୍ୟାମ ପଚାରିଲା ।

"ସହି ନ ଗଲେ ସମସ୍ତେ ତୋହର ଉପରେ ରାଗିବେ । ତୋତେ ମୁଠିଏ ଖାଇବାକୁ ମିଳିବ ନାହିଁ ।" ମା' କହିଲେ ।

"ମା, ମୁଁ ଧନୀଲୋକଙ୍କ ସଙ୍ଗେ କଳି କଲେ ତୁମେ ବି ମୋତେ ଖାଇବାକୁ ଦେବ ନାହିଁ ?" ଶ୍ୟାମ ମା'ଙ୍କ ପାଖକୁ ଲାଗିଯାଇ ପଚାରିଲା ।

ମା' ତାକୁ କୋଳ କରି ଦୁଃଖପୂର୍ଣ୍ଣ କଣ୍ଠରେ କହିଲେ, "ବାପ, ମୁଁ ସିନା ତୋତେ ଖାଇବାକୁ ଦେବି, କିନ୍ତୁ ମୁଁ ବଞ୍ଚିବି କେତେ ଦିନ ? ମୋ

ଗୀତା

ପରେ ତୋତେ ତ ପୁଣି ଦୁନିଆ ଉପରେ ନିର୍ଭର କରି ଚଳିବାକୁ ହେବ !"

ମା'ଙ୍କର ଏକଥା ଶ୍ୟାମ ମନରେ ଏପରି ରେଖାପାତ କଲା ଯେ ସେହିଦିନରୁ ତା'ର ଆଚାର ବ୍ୟବହାର ଚାଲିଚଳନ ବଦଳିଗଲା । ସେ ଦୂରବର୍ତ୍ତୀ ଏକ ଗ୍ରାମରେ ଜଣେ ପଣ୍ଡିତଙ୍କ ପାଖରେ ବିଦ୍ୟାଭ୍ୟାସ ସକାଶେ ଯାଇ ରହିଲା ।

ପଣ୍ଡିତ ତାକୁ ମାଗଣା ପଢ଼ାଇଲେ । କିନ୍ତୁ ମୁଠେ ଆହାର ଯୋଗାଡ଼ କରିବା ସକାଶେ ଶ୍ୟାମକୁ ସେ ଗାଁର ଲୋକଙ୍କ ଘରେ କାମଦାମ କରିଦେବାକୁ ପଡ଼ୁଥାଏ । ଦିନେ ହୁଏତ କାହା ବାଡ଼ିରେ ପୋଖରି ଖୋଳା ହେଉଛି- ଶ୍ୟାମ ସେଥିରେ କେଇଘଣ୍ଟା ପାଇଁ ସାହାଯ୍ୟ ଦେଇ ତାଙ୍କ ଘରେ ଗଣ୍ଡେ ଖାଏ । ହୁଏତ କାହା-ଘରେ ମହୋତ୍ସବ ହେଉଛି । ଶ୍ୟାମ ଯାଇ ପରଷେଇବାରେ ସାହାଯ୍ୟ କରି ବଦଳରେ ମୁଠିଏ ଆହାର ପାଏ ।

ଶ୍ୟାମର ପାଠ ଶେଷ ହେବା ପୂର୍ବରୁହିଁ ତା' ମା' ମରିଗଲେ । ଶ୍ୟାମ ବହୁତ ଆଘାତ ପାଇଲା । କିନ୍ତୁ ପୁଣି ଗୁରୁଙ୍କ ଗାଁକୁ ଫେରିଆସି ପାଠ-ପଢ଼ାରେ ମନ ଦେଲା ।

ସେ ଗାଁରେ ଥାଏ ରାମ ବୋଲି ଗୋଟିଏ ପିଲା । ସେ ଯେମିତି ଚଗଲା, ସେମିତି କଳିଆ-ଖୋର । ଦିନେ ତା' ମା' ତାକୁ କହିଲେ, "ତୋହରି ବୟସର ପିଲା ଶ୍ୟାମ । କିନ୍ତୁ ସେ କେଡ଼େ ପରିଶ୍ରମ ନ କରୁଛି, ପୁଣି କେଡ଼େ ମନଦେଇ ପାଠ ନ ପଢ଼ୁଛି ! ଆହୁରି ବଡ଼ କଥା ତାକୁ ଯିଏ ଯାହା କହୁ, ସେ କିନ୍ତୁ କାହାକୁ ଜବାବ୍ ଦେବାର ମୁଁ ଶୁଣିନାହିଁ ।

ରାମ ଶ୍ୟାମର ପ୍ରଶଂସା ପୂର୍ବରୁ ମଧ୍ୟ ଶୁଣିଥିଲା ।



ସେ କୌତୂହଳୀ ହୋଇ ଶ୍ୟାମ ଉପରେ ଦୃଷ୍ଟି ରଖିଲା । ଦିନେ ଶ୍ୟାମ ଜଣକ ବଗିଚାରେ ପାଣି ଦେଉଥାଏ । ମାଲିକ ତାକୁ କହିଲେ, "ହଇରେ, ତୁ ଏତେ ପାଣି ଦେଲେ ଗଛମୂଳ ସଡ଼ିଯିବ ନାହିଁ ?"

ପରଦିନ ତାଙ୍କର ବଗିଚାରେ ଶ୍ୟାମ କମ୍ ପରିମାଣରେ ପାଣିଦେବାରୁ ମାଲିକଙ୍କ ସ୍ତ୍ରୀ ଦେଖି କହିଲେ, "ହଇରେ ପିଲା ! ଏତେ କମ୍ ପାଣି ଦେଲେ ଗଛମୂଳ ଶୁଖିଯିବ ନାହିଁ ?"

ତହିଁ ପରଦିନ ଶ୍ୟାମ ଜଣକ ପିଲାକୁ ଧରି-ଥାଏ । ପିଲାର ବାପା କହିଲେ, "ସବୁବେଳେ ପିଲାକୁ ଧରିଛୁ କାହିଁକି ? ସେ ଚାଲି ଶିଖିବ କେମିତି ?"

ଶ୍ୟାମ ପିଲାକୁ ତଳେ ଛାଡ଼ିଦେଲା । କିଛି ସମୟ ପରେ ପିଲାର ମା' ଆସି କହିଲେ, "ଯଦି ପିଲା ତଳେ ଚାଲିବ, ତେବେ ତୁ କରୁଛୁ କ'ଣ ?"

ରାମ ଲକ୍ଷ୍ୟ କଲା, ଶ୍ୟାମ କାହାକୁ ପଦେ ବୋଲି କିଛି କହୁ ନାହିଁ ।

ବେଳ ଉଣ୍ଡି ରାମ ତାକୁ ପଚାରିଲା, "ଲୋକେ ଏତେ ଅନ୍ୟାୟ ହୁକୁମ ଦେଉଛନ୍ତି; କିନ୍ତୁ ତୁ ପ୍ରତିବାଦ କରୁନାହୁଁ କାହିଁକି ?"

"ସେମାନେ ଅନ୍ୟାୟ କହୁନାହାନ୍ତି । ନିଜ ନିଜ ଦୃଷ୍ଟିକୋଣରୁ କହୁଛନ୍ତି । କିନ୍ତୁ ମୁଁ ସେମାନଙ୍କ କଥା ଉପରେ ଜୋର ନ ଦେଇ ସେମାନଙ୍କ ହୃଦୟରେ କ'ଣ ଅଛି ଦେଖେ । ସେମାନେ ମୋତେ ସ୍ନେହଭରେ ଦେଖନ୍ତି ବୋଲି ପିନ୍ଧା ଖାଇବାକୁ ଦେଉଛନ୍ତି !" ଶ୍ୟାମ କହିଲା ।

ରାମ ମୁଣ୍ଡ ହଲାଇ ତା'ପରେ କହିଲା, "କିନ୍ତୁ ଭାଇ, ମୋତେ କେହି ପଦେ କଡ଼ା କରି କହିଲେ ମୁଁ ଦୁଇପଦ ଶୁଣାଇଦିଏ ।"

ଶ୍ୟାମ ଦୀର୍ଘନିଶ୍ୱାସ ଛାଡ଼ି କହିଲା, "ହଁ ଭାଇ, ମୋ ମା' ବଞ୍ଚିଥିବା ଯାଏ ମୁଁ ବି ସେମିତି କରୁଥିଲି !"

ଏକଥା ରାମ ମନରୁ ସହଜରେ ଗଲା ନାହିଁ । ମା' କେଡ଼େ ବଡ଼ ସାହସର ଉତ୍ସ, ସେ ତାହା ବୁଝିଲା । ସଙ୍ଗେ ସଙ୍ଗେ ମା'ଙ୍କ କଥା ମାନି ସେ ସମସ୍ତଙ୍କ ପ୍ରତି ସହନଶୀଳ ହେବାକୁ ଶିଖିଲା ।



# ପ୍ରତିକାର

କଲ୍ୟାଣସିଂହ ଯେ କେବଳ କୃପଣ ଥିଲା, ତାହା ନୁହେଁ, ସେ ଲୋକଙ୍କୁ ହରକତ କରିବାରେ ଖୁବ୍ ସୁଖ ପାଉଥିଲା ।

ରାତିରେ ସେ ଦୁଇ ତିନଥର ଉଠି ନିଜ ସିନ୍ଦୁକ ଖୋଲି ଟଙ୍କାପଇସା ସୁରକ୍ଷିତ ଅଛି କି ନା ଦେଖୁଥାଏ । ଇଚ୍ଛା କରି ନିଜ ଘର କବାଟ, ଆଲମିରା କବାଟ ଖୁବ୍ ଶବ୍ଦ କରି ବନ୍ଦ କରୁଥାଏ ।

ପାଖ ଘରର ଲୋକଙ୍କ ନିଦରେ ସେ ଶବ୍ଦ ଯୋଗୁଁ ଖୁବ୍ ବ୍ୟାଘାତ ଘଟୁଥାଏ । ସେଇଆ ଥିଲା କଲ୍ୟାଣସିଂହର ଆନନ୍ଦ ।

ଥରେ କଲ୍ୟାଣସିଂହର ପଡ଼ୋଶୀଘରକୁ ଜଣେ ଅତିଥି ଆସିଥାନ୍ତି । ତାଙ୍କୁ ରାତିରେ ଭଲ ନିଦ ହୁଏ ନାହିଁ । ସେ ସାରାରାତି କଲ୍ୟାଣସିଂହର ଉପଦ୍ରବ ଶୁଣିଲେ ଓ ସକାଳେ ଅନ୍ୟମାନଙ୍କଠାରୁ ସବୁ କଥା ବୁଝିଲେ ।

ସେ ଯାଇ କଲ୍ୟାଣସିଂହକୁ ଭେଟି କହିଲେ, "ଭାଇ, ଆଖପାଖର ଲୋକେ ତୁମ ଯୋଗୁ ସିନା ନିରାପଦରେ ଶୋଇପାରୁଛନ୍ତି !"

"କିପରି ?" କଲ୍ୟାଣସିଂହ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତୁମେ ରାତିରେ ବାରମ୍ବାର ଜାଗି ଶବ୍ଦ କର ବୋଲି ଏ ଆଡ଼କୁ ଚୋର ଆସନ୍ତି ନାହିଁ ।" ଅତିଥି କହିଲେ । କଲ୍ୟାଣସିଂହ ତେଣିକି ଆଉ ଶବ୍ଦ କରିବାର ଶୁଣାଗଲା ନାହିଁ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ (ସେଥିରେ ଅନ୍ୟ କଥା ଲେଖିବା ଅନୁଚିତ) ଚନ୍ଦାମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "କହନ୍ତି ଗୁରୁଜୀ ଭଲପିଲାମାନେ ନିଜ କାମ ସବୁ କରନ୍ତି ନିଜେ,
ଦ୍ୱିତୀୟ ଚିତ୍ର : ଏତିକ ଅବୁଝା କୁନାଟା ଆମର ସେକଥା କି ଅବେ ମନରେ ନେବେ !"

ପୁରସ୍କାର ବିଜୟୀ : ଲକ୍ଷ୍ମୀଧର ଦାସ, ବାରଙ୍ଗ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.





చందమామ





Chandamama is published in TWELVE INDIAN Languages including English: educating and entertaining millions of readers. Our SINHALA Language edition is now dedicated to delight the children of SRILANKA

**CHANDAMAMA**

*the magazine for children makes the young and old WISE.*




চাঁদমামা **CHANDAMAMA** चांदोबा

# मुफ्त ! मुफ्त !! मुफ्त !!!

हमारी कंपनी ने पूरे हिंदुस्तान में बहुत नाम कमाया है. पांच साल गारंटी का माल पहले पहल हमने ही बनाया है. पंद्रह साल की कोशिश और तजुर्बे के बाद हमने यह माल बनाया है. हिंदुस्तान की तमाम कंपनियों में हमारी कंपनी एकदम बडी है. हमारी कंपनी के समस्त जेवरों की सूची तथा उनके मल्य आप घर बैठे ही मुफ्त मंगा सकते हैं. हमारे बहुमूल्य केटलाग को देखकर आप अपनी मनपसंद चीज सिर्फ नंबर लिखकर वी.पी.पी.



ESTD. 1963

**MERI GOLD COVERING WORKS**

P. B. No. 1405, No. 14, Ranganathan ST., T. Nagar, Madras-600017.

# ରାମ ଓ ଶ୍ୟାମ...

## ଅସଲି ଲକ୍ଷ



















